ଥରେ ବୋଲି ସେଆଡ଼କୁ ଚାହିଁଲା ନାହିଁ । ସେ ଭାବୁଥିଲା ଯେପରି
ଏକ ଗୁରୁତର ଅପରାଧ କରି ଫେରୁଅଛି । ସନ୍ଧ୍ୟାର ନୀଳକୃଷ୍ଣ ଆକାଶ
ବକ୍ଷରେ ତାର ସ୍ୱର୍ଗବାସୀ ପିତୃପୁରୁଷଗଣ ଯେପରି ରୋଷକଷାୟିତ
ନୟନରେ ତାକୁ ତିରସ୍କାର କରୁଅଛନ୍ତି ! ତାଙ୍କର ଚକ୍ଷୁର ଦୀପ୍ତିରେ
ଅଗଣିତ ତାରକାରାଶି ଜଳଜଳ କରି ଜଳି ଉଠୁଛନ୍ତି ପରା !
ସେଦିନ ରାତିରେ ମଦନାକୁ ଖାଇବାକୁ ଭାତ ରୁଚିଲା ନାହିଁ କି
ଶୋଇବାକୁ ନିଦ ଆସିଲା ନାହିଁ ।

ପରଦିନ ସନ୍ଧ୍ୟାବାଧାରୁ ସଞ୍ଜ ଗାଡ଼ିରେ ସେମାନେ ଗୋପାଳ-
ପୁର ଯାଇକି ଯାଇ ସେଇଠୁ ଇଷ୍ଟିମାରରେ ବସିଲେ । ଲଖିଆ କିଛି-
ଦିନ ପରେ କପର ବାବୁ ହୋଇ ଫେରିବ ଏହା କହିବା ପାଇଁ
ଖଣ୍ଡିଆ ସିଗାରେଟ୍ ଧରିକି ଧରି ତା'ର ସାଙ୍ଗସାଥିମାନଙ୍କ ପାଖକୁ
ଯାଇଥିଲା । ମଦନାର ତ ଉତ୍ସାହ ଆଦୌ ନ ଥିଲା ବରଂ ସେ ଜଗ-
ନ୍ନାଥଙ୍କୁ ଡାକୁଥିଲା କପରି ମାଳତୀର ମନ ବଦଳି ଯାଉ—ଆଜି ସେ
ଯାଇଁ ଯାଇ ଅଧିକାରୀଙ୍କ ଠିକା କେଇଟି ଫେରାଇ ଦେଇ ଗୃହ ଜମି
ଖଣ୍ଡିକ ଫେରାଇ ଆଣି ଚିରନ୍ତନ ସୁଖନେଇ ଘୁଞ୍ଚି ଯାଇ ମାଟି
ଚକଟି ଜୀବନ ଗଢ଼ିବ । ଏଣେ କିନ୍ତୁ ମାଳତୀ ସବୁ ଜନମପଣ ବନ୍ଧା-
ବାନ୍ଧିରେ ଲାଗିପଡ଼ିଛି । କେଉଁଠା ବା ତା'ର ପେଟରେ ଅଛି କେ ! କିଂବା
ସିନେମା କେଉଁଖଣ୍ଡି ତ ଧାଡ଼ୀଙ୍କ ଦୋକାନରେ ଦିନା ପଡ଼ିଛି—ଏ
ମାଳେ ମୁକ୍ତି ନାହିଁ । ଷଣ୍ଢ ଚଳଦ କି ବଢ଼ି ଆଉ ଛିଡ଼ିକି
ଛିଡ଼ିଛନ୍ତି ।—ଆଉ କେଉଁ ଛୁଞ୍ଚା କନ୍ଥା ପଟଆ ଦିଖଣ୍ଡ ଅଛି ସେଗୁଡ଼ା
ମଧ୍ୟ କିଣି ଆଗରେ ବାହାର କରିବାକୁ ମାଳତୀକୁ ପରମ ଲାଗୁଛି ।
ଶେଷରେ ମଧ୍ୟ ସେ ସବୁଟାକୁ ବାନ୍ଧିଛାନ୍ଦି ପେଡ଼ିଟାଏ ଆଉ ଗଣ୍ଠିଲିଟାଏ
ସଜ କଲା ।

ବେଳ ଅସି ମୁଣ୍ଡରେ ହେଲଣି, ଆଉ ମଦନା ସେଇ ବେଳୁଁ ବାଡି ଅନ୍ଧାରରୁ ଉଠି ଚାଲିଯାଇଛି ଏଯାକେ ଦେଖା ନାହିଁ । ଏଆଡ଼େ ସେଆଡେ ଧା ଦଉଡ଼ କରି ଲଖିଆ ଫେରିଲା,—ଖିଆପିଆ ସରିଲା—ତେବେ ମଧ୍ୟ ତା'ର ବାପାର ଦେଖା ନାହିଁ । ବଶିକେଶନ ବ୍ୟସ୍ତ-ହୋଇ ଲଖିଆକୁ ସାଥିରେ ନେଇ ମଦନାକୁ ଖୋଜିବାକୁ ବାହା-ରିଲେ ।

ଗାଁ'ଟା ଯାକ ଦଉଣ୍ଡି ବାରବେହେରା ଘର ହୋଇ ମାମୁଁ ଭଣଜା ଦହେଁ ବଲ ଗମ୍ଭୀର ରାସ୍ତାରେ ଦାସବନ୍ଧ ହୁଡ଼ା ଉପରେ ଆସି ଉଠିଲେ । ବଶୀ ଦେଖିଲେ, ବନ୍ଧତଳେ ମଦନା କାଦୁଅ ଲଟ-ପଟ ହୋଇ ବାରବେହେରା ସହିତ ତା' ଖେତରୁ ବାଲୁଙ୍ଗା ଓପା-ଡ଼ୁଛି—ଆଉ ଦୁଃଖସୁଖ ହେଉଛି । ସକାଳୁ ଏତବେଳଯାଏ କିଛି ଖାଇ ନାହିଁ । କାଲି ରାତରେ ମଧ୍ୟ ଭଲକରି ଖାଇ ନାହିଁ । ମୁହଁଟା କେମିତ ସିଠାଳିଆ ଦେଖାଯାଉଛି । ଖରାରେ ମୁଣ୍ଡକାନ ଝାଳ ନାଳ ହୋଇ ପଡୁଛି । ମୁଣ୍ଡରେ କେବଳ ଗାମୁଛାଟି ବନ୍ଧା ଯାଇଛି । ସେହି ଶୀର୍ଣ୍ଣ ଶୁଷ୍କ କ୍ଷୁଧିତ ରୂପ ଦେଖି ଲଖିଆ ଡାକିଲା—'ବାବା' !

ବଶିବାବୁ ସେହି ମୁହୂର୍ତ୍ତରେ ରାଗି ଲାଲ ହୋଇଗଲେ—କିନ୍ତୁ ପାଖରେ ବାରବେହେରାକୁ ଦେଖି ଚୁପ ପଡିଗଲେ । ମଦନା ବଶିବାବୁଙ୍କୁ ହୁଡ଼ା ଉପରେ ଦେଖି ହସି ପକାଇଲା—"ଆଉ କେବେ ଏତେ ବଲରେ ବସି ଏପରି ସୁଆଧିନ ଭାବରେ କାମ କରିବି—କିଏ ଜାଣେ ! ସେଇଥି ପାଇଁ ଆଜି ବେହେରା ଭାଇ ସାଙ୍ଗରେ ଶେଷଥର ପାଇଁ ସାଙ୍ଗ ହେଇ ଖେତଟା ଟିକିଏ ବାଛି ପକାଇଲି । ହଉ, ଚାଲ—ଚାଲ" କହି ଉଠି ଛିଡ଼ା ହେଲା ।

ମଦନାର ମତ ପରିବର୍ତ୍ତନ ହୋଇନାହିଁ ଦେଖି ବଶିବାବୁ ଖୁସି ହେଲେ । ଖାରର ଉପକାରର ପ୍ରତିଦାନରେ ତା' ଜମିରେ କାମ କରିଦେବାଟା ବରଂ ତାଙ୍କୁ ଟିକିଏ ପସନ୍ଦଯୋଗ୍ୟ ହେଲା । ସେ ହସି କହିଲେ—"ଏଇ ଅପନାଟା ଭିତରେ ପଶି ମଶା ମାଛି ବଣରେ ତମକୁ କାଦୁଅ ଚକଟିବାକୁ ଭାରି ଭଲ ଲାଗେ ମଦନା ଭାଇ, ନା ?"

ମଦନା ଲାଜ କାମୁଡ଼ି କହିଲା—"ଆଜ୍ଞା, ଏମିତି କଥା ତୁଣ୍ଡରେ ଭାଖନ୍ତୁ ନା । ଲକ୍ଷ୍ମୀମାତାଙ୍କ ଏଇସବୁ କାମଦାମ କେବେ ଅପନା ହୁଏ । ଏଇ କାଦୁଅ ଚକଟି ତ ଆମର ଚଉଦ ପୁରୁଷ ବଞ୍ଚି ଆସିଛନ୍ତି । ଘରେ ଯଦି ଧାନ କାଣିଏ ନାହିଁ, ମୁଠା ମୁଠା ଟଙ୍କା ଅରଜି କ'ଣ ହେବ ବାବୁ !"

ଖରାଟାରେ ବଙ୍କା ହୁଡ଼ାରେ ଛିଡ଼ାହୋଇ ବୋକା ମଦନା ସାଥିରେ ତର୍କ କରିବାର ଇଚ୍ଛା ବଶିବାବୁଙ୍କର ମୂଳରୁ ନ ଥିଲା । ଏଣୁ ସେ ମଦନାକୁ ଶୀଘ୍ର ଆସିବାକୁ କହି ଲଖିଆକୁ ଧରି ଘରମୁହାଁ ଗ୍ଭଲିଲେ । ତାଙ୍କ ପଛେ ପଛେ ମଦନା ମଧ୍ୟ କର୍ମ ତ ପଦକ୍ଷେପରେ ଧୀରେ ଧୀରେ ଆଗେଇଲା—ଯେପରି ତା'ର ପିଣ୍ଡରେ ପ୍ରାଣ ନାହିଁ । ସେ ସେହିପରି କାଦୁଅ ଲଂପଟ ହୋଇ ଗମ୍ଭୀର ମୁଖରେ ଖୁଆକାଠର ଶବ୍ଦ ନେଇ ଏକ ଅସୀମ ଗୁରୁବେଦନା ଧରି ଫେରିଲା—ଯେପରି କେଉଁ ଏକାନ୍ତ ଆତ୍ମୀୟର ଶବକୁ ଶ୍ମଶାନରେ ଅଗ୍ନିଭ ଦେଇ ଫେରୁଛି । ମାଲତୀର ଜୋର ଜବରଦସ୍ତିରେ ହାତଗୋଡ଼ ଧୋଇ ନାକେ କାନେ ଦୁଇଟା କ'ଣ ଗୁଞ୍ଜିଦେଲା । ଗୋଟିଏ ଖାଉଟିଆ ଲୁଗାପିନ୍ଧି ଗଞ୍ଜି ଖଣ୍ଡିକ ଦେହରେ ଗଳାଇ ଘର ଗୁହାରଆଖି ଅଡ଼େଇ ଅନାଇ ଆସିଲା—ହୁହୁ ହୋଇ ଆଖିରୁ ତାର ଲୁହର ଝର ଫୁଟି

ବାହାରିଲା । ବାରବେହେରା ସଅଳ ସଅଳ ଜାମସାରି ତାକୁ ଷ୍ଟେସନ ପାଖକୁ ନେଇ ଛାଡ଼ିବାକୁ ଭାରଟାଏ ଧରି ଆସିଛି । ମାଳତୀ ପେଡ଼ି ଆଉ ଗଣ୍ଠିଲି ଖଣ୍ଡିକ ତା' ଭାରରେ ଦେଇ ତାକୁ ଆଗେ ଆଗେ ଷ୍ଟେସନ ପଠାଇଦେଲା ।

କଳ୍ପନା-କୁଞ୍ଜରେ ଦୋଦୁଲ୍ୟମାନ ଲକ୍ଷ୍ମୀ ମଧ୍ୟ ତୁଳସୀ ତଳେ ଦଣ୍ଡବତ କରିବାକୁ ଯାଇ କାନ୍ଦପକାଇଲା । ଏଇ ମାଟି ଖଣ୍ଡିକରେ ଯେ ତା'ର ଶୈଶବର ଶତ ପ୍ରିୟ ସ୍ମୃତିଗୁଡ଼ିକ ବିଜଡ଼ିତ ! କେବଳ ମାଳତୀ ଏକ ଭବିଷ୍ୟତର ରଙ୍ଗିନ୍ ସ୍ୱପ୍ନରେ ମସ୍‌ଗୁଲ୍ ରହିଲା । ସାଇପଡ଼ିଶାର ସେତିକି ମାଇପି ତାକୁ ବିଦାୟ ଦେବାକୁ ଆସି-ଥିଲେ । ସମସ୍ତଙ୍କ ଆଗରେ ସେ ଯେପରି ପରମ ସୌଭାଗ୍ୟବତୀ ! ତା'ର ସ୍ୱାମୀ ମଦନା ବଡ଼ଲୋକ ହୋଇଛି । ତା'ର ହାତରେ ସୁନାର ଘଡ଼ି ବନ୍ଧା, ମୁହଁରେ ସିଗାରେଟ୍ ପିକାର ଧୂଆଁ—ପୁର ମହକାଇ ଦେଉଛି ।

ସନ୍ଧ୍ୟା-ତାରା ଆକାଶରେ ଦେଖାଗଲାଣି । ଷ୍ଟେସନ ଯିବା ବାଟରେ ମଦନା ଶେଷଥର ପାଇଁ ଦାସବନ୍ଧ ହୁଡ଼ାରେ ଉଠି କିଛି-କ୍ଷଣ ବିସ୍ତୃତ ସବୁଜ ଧାନକ୍ଷେତ ଆଡ଼କୁ ଚାହିଁରହିଲା — ତା' ପର ଦୀର୍ଘନିଶ୍ୱାସଟାଏ ପକାଇ ଗାମୁଛା କାନରେ ଆଖି ଦିପାଖୁ ଉଦ୍ଧ ଜଳକୁ ପୋଛିଲାଇ ବାଟେ ବାଟେ ଚାଲିଲା । ସେତିକିବେଳେ ଠିକ୍ ତା'ର ପଛପଟୁ ବନ୍ଧହୁଡ଼ା ବରଗଛ ଉପରୁ 'ହୁ ହାଁ' ଚାତୁଉଠାଏ ଡାକି ଉଠିଲା — ହୁଁ — ହୁଁ ! ମଦନାର ଛାତିଟା ଥର ଥର କରି କାମ୍ପି ଉଠିଲା ।

ବାରବେହେରାଙ୍କୁ ବିଦାୟ ଦେଇ ସାକ୍ଷୀଗୋପୀନାଥଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆଟାଏ ମାରି ରେଲ ଉପରେ ବସିଲାଣି ମଦନା

କାନ୍ଦପକାଇଲା । ଟିକିଏ ପରେ ଲମ୍ବ ଚୋଷ୍ଟ ଦୀର୍ଘନିଃଶ୍ୱାସଟାଏ ପକାଇ ଗୁଣୁ ଗୁଣୁ ହୋଇ କହିଲା—"ହେ ଗୋପୀନାଥେ, ମୋ' ଉପରେ ଏ ତମର ବରଦାନ ନା ଅଭିଶାପ ?"

---

# ଅଭିଶପ୍ତ

ଧରମୁ—ଲଦାଖଣିରେ କୁଲି ସେ !

ପେଟର ଦାଉରେ ପଡ଼ି ସେ ଘର ଦୁଆର ଛାଡ଼ି ଦୂର ପାହାଡ଼ରେ ଆସି ଆଶ୍ରୟ ନେଇଛି । ଗୁଆ ଲଦାଖଣିର ସେ ଗୋଟିଏ କୁଲି । ବର୍ଷେହେଲା ଦେଶରୁ ଝିଅ ମାଇପ ଆଣି ସେଇ ପାହାଡ଼ତଳେ ଘର କରି ରହିଛି । ଷ୍ଟେସନ ପାଖକୁ ଲାଗି ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର ମଧ୍ୟରେ 'ଖାଦାନ ଠିକାଦାର'ଙ୍କ ବଙ୍ଗଳା—ବେଶ୍ ଧୋବଧାଉଳିଆ ହୋଇଛି । କୋଠା ସାମନାରେ ଗୋଟିଏ ସୁନ୍ଦର ଫୁଲ ବଗିଚା—କେତେ କିସମର ଫୁଲ ଫୁଟି ଉଜ୍ଜ୍ୱଳ ହଉଛି । ତା'ର ଭିତରେ ଗୋଟିଏ ଲୁହାର ଦୋଳି ବସିଛି— ବେଳେ ବେଳେ ବଙ୍ଗଳାର ଖୋକା ଖୋକିମାନେ ସେଇଠି ଦୋଳି ଖେଳନ୍ତି । ଆଉ ସେହି ବାବୁ ବଙ୍ଗଳାର ଅଦୂରରେ ଧାଡ଼ିଏ 'ହାଟିଂ'(ପଙ୍କ୍ତା) ଘର—ବାବୁଙ୍କ ଗୋରୁ ଗୁହାଳ ଠାରୁ ମଧ୍ୟ ହୀନ ! ସେଇ 'ହାଟିଂ' ଘର ଭିତରୁ ଗୋଟିକରେ ଧରମୁ ରହେ—ପିଲା କବିଲା ଧରି ।

ସକାଳେ ଯେତେବେଳେ ଇଞ୍ଜିନ୍ ଘରର ବଂଶୀଟା ନିହାତି ନିଦାରୁଣ ସୁରରେ ବାଜିଉଠେ—ଧରମୁ ତର ତର ହୋଇ ପଖାଳ ଗଣ୍ଡାକ ନାକେ କାନେ ଗୁଞ୍ଜିଦେଇ ଚାଲିଯାଏ—ତା' ବି କେଉଁ ଦିନ କଙ୍କାଳକାମଚେଷ୍ଟାଏ ଦେଇ କେବେ ବା ସେମିତି

ଭୁଲ୍ଲା ବାଯି ପଖାଳ ! ଯେତେବେଳେ ଶତଛିନ୍ନ ମଇଳି ଲୁଗାଖଣ୍ଡିକ ଅଣ୍ଟାରେ ଗୁଡ଼ାଇ ରଙ୍ଗ ବେରଙ୍ଗର ତାଳପକା ଗଞ୍ଜିଖଣ୍ଡିକ ଦେହରେ ଗଳାଇ ପାହାଡ଼ ଉପରକୁ ଉଠିଯାଏ—ସେତେବେଳେ ସେହି ଠିକାଦାର ବାବୁଙ୍କ ଗୃକର ମଟ୍ଟାକାଠା ତାକୁ ଦେଖି ବିଦ୍ରୂପ କରି ହସିଉଠେ—"ବେହୁଦା ହୋ।" ଧରମୁର ହାଡ଼ କଡକଡେଇ ଉଠେ, ମୁହଁଟା ତା'ର ଲାଲ୍ ପଡଯାଏ। ପୁଣି ପର ମୁହୂର୍ତ୍ତରେ ସେ ନିଜକୁ ସମ୍ଭାଳି ନେଇ ଗୃକର ଟୋକା ଆଡକୁ ଗୃହିଁ ଟିକିଏ ମୁରୁକି ହସିଦିଏ। କଣ କରିବ—କପାଳଟା ତ ତାର ହୀନ ! ନ ହେଲେ ଗୋଟାଏ ଛତର ଗୃକରଟୋକା ଏପରି ଥଟ୍ଟା କରନ୍ତା ନା ! ହେଇ ପର ସେଦିନର କଥା !—ଖୋରଧା ଲଢ଼ାଇରେ ତା' ଗୋସାଇ ଧରଣୀଧର ବାହୁଭୂଜଙ୍ଗ ମହାପାତ୍ର ସାନ୍ତଶ୍ରେଷ୍ଠ ଗୁଳି ଖାଇ ସୁଦ୍ଧା ଏକା ଏକା ଦେଢ଼ଶହ ପଲଟଣଙ୍କ ମୁଣ୍ଡ କାଟି ପକାଇଥିଲେ। ଆଉ ଆଜି ତାର ନାତି ଗୋଟାଏ ବାରବୁଲା ଅଭଜାତ୍ୟହୀନ ଲୋକଙ୍କ ନିକଟରେ ଲାଞ୍ଛିତ ! ସେ ଦୀର୍ଘନିଃଶ୍ୱାସଟାଏ ପକାଇ ପାଦର ଗତି ଟିକିଏ ଚଞ୍ଚଳ କରିଦିଏ।

ଧରମୁ କାମକୁ ଗୃଲିଗଲା ପରେ ତା ସ୍ତ୍ରୀ ରତମା କୌଣସି ପ୍ରକାରେ ଛିଣ୍ଡା ଶାଢ଼ୀଖଣ୍ଡିକ ଅଣ୍ଟାରେ ଗୁଡାଇ, ବାସୀ ଅଡ଼ତରେ ଲାଗିଯାଏ। ବରଷକର ଛୁଆଟା ତା'ର ଛିଣ୍ଡା କାନ୍ଥାଟା ଉପରେ ପଡ଼ି ପଡ଼ି ହାତ ମୁଠାଟାକୁ ପାଟି ଭିତରେ ପୁରାଇ 'ଚୁଁ ଚୁଁ' କରି ଗୃେପି ପକାଏ—ରତମାର ଦୁଇଟା ଶୁଷ୍କ ସ୍ତନ ତାକୁ ତୃପ୍ତ କରିପାରେ ନାହିଁ !

ଧରମା ହାଣ୍ଡିଏ ବାସିଭାତ ଦେଇ ବସି ବସି କେତେବେଳେ ତା ଛୁଆର ଛିଣ୍ଡା କାନ୍ଥା ଟିକିଏ ମରାମତି କରି ପକାଏ-କେତେବେଳେ

ବା କେବଳ ଷ୍ଟୁପିଟିକୁ ଦୋକାନ ଘରେ ବସିରହେ ଟେରସ୍ତର
ବାଟ ଚାହିଁ—ଦୁଆରେ ବେକୁ । ଥରେମୁ ଧନଟାସାର ଟଗ୍ରବଣ୍ଠାର
ମାଡ଼ ସହି ପଥର ତାଡ ତାଡ଼ି ଗୁର୍ ଛ' ଅଣା ପଇସା କ'ଣ
ଅଣିଲେ ପାଇ ଦିବ। ତେହେଲ ପାଖ ହେଠ ଦୋକାନରୁ ଡାଲି
ଗୁଡ଼ଲ କ'ଣ ଦ'ଟା ଅଣି ସେ ଚୂଲ୍ଲୀରେ ହାଣ୍ଡି ବସାଇ ଫୁଟାଇବ-
ଆଉ ଗେରସ୍ତ ଓ ଛୁଆଙ୍କୁ ତା'ର ଖାଇବାକୁ ଦେବ ! ହଠାତ୍
ସାମନା ମିଶାହାର ବଙ୍ଗଳାରୁ ଭାସିଆସେ ଲଳାସର ହାସ୍ୟଧ୍ୱନୀ—
ଚିନ୍ତା ତା'ର କ୍ଷଣକ ପାଇଁ ଭାଙ୍ଗିଯାଏ । ସେ ତନ୍ମୟହୋଇ
ଚାହିଁରହେ ସେହି ବଙ୍ଗଳା ଆଡ଼କୁ । ଏକ ସୁକୁମାର ଶିଶୁକୁ
କୋଳରେ ଧରି କୋଠା ଭିତରୁ ବାହାରି ଆସେ ଏକ ଛତଣ-
ଗଡ଼ଆଣୀ ଆୟା—ଆଉ ଶିଶୁଟିକୁ ଧରି ଦୋଳରେ ବସି ଝୁଲି
ଝୁଲି ଗାଇଉଠେ—'ଝୁଲନ୍ ଝୂଲେ ମେରେ କାନାହିଁୟା ।'
ରତନା ଅପଲକ ଦୃଷ୍ଟିରେ ସେ ଦୃଶ୍ୟ ଦେଖେ ମୂକ
ହୋଇ—ଆଉ କାନଡେର ଶୁଣେ ବଙ୍ଗଳା ଭିତରର ହାସ୍ୟଧ୍ୱନୀ !
ପୁଣି ମନେପଡ଼ିଯାଏ ଛୁଆଟାକୁ ତା'ର ଗୁପିଥରେ ହୃତପିଣ୍ଡର
ସ୍ପନ୍ଦନଟାକୁ ତା'ର ଶିହରିତ କରିବା ପାଇଁ । ହଠାତ୍ ଛୁଆଟା
ତା'ର କାନ୍ଦିଉଠେ ! ସେହି ହାସ୍ୟ ଓ କ୍ରନ୍ଦନର ଘୂର୍ଣ୍ଣିପାକରେ ପଡ଼ି
ସେ ଭାବେ—'ଏ ପୁଣି କେଉଁ ବିଧାତାର ଖେଳ !'

ଯେତେବେଳେ ମାଟି ଘରର ମାଟି ଚଟାଣ ଉପରେ ପଡ଼ି
ଛୁଆଟି ତା'ର ଭୋକରେ ଅଉଟୁ ପାଉଟୁ ହୋଇ ଚିତ୍କାର କରି
କାନ୍ଦି ଉଠେ—ସେତେବେଳେ ବାବୁବଙ୍ଗଳାର ବରନ୍ଦାରେ ଆୟା
'ଖୋକନ୍'କୁ କୋଳରେ ଧରି 'ଖୋକା ନ ଖାଯ୍ ତ ତୋତା ମୈନା
ଖାଯ୍—ଆଯ୍ ଆଯ୍' କହି ଦୁଧ ଟିକଏ ପିଆଇବା ପାଇଁ ବ୍ୟତ-

ବ୍ୟସ୍ତ ହୋଇଯାଏ । ବାବୁଆଣୀ ଝିଅଟିକୁ ତାଙ୍କର କେତେ
ବେଶଭୂଷା କରି ଯେତେବେଳେ ବାବୁଙ୍କ କୋଳରେ ଦେଇ
ସାର୍ଥକତାର ହସରେ ଘରଖଣ୍ଡିକୁ ଭରିଦିଅନ୍ତି—ସେତେବେଳେ
ରତମାର ଶିଶୁର ମୁହଁଖଣ୍ଡିକ କ୍ଷୁଧାର ତାଡ଼ଣାରେ ଶୁଷ୍କ ହୋଇ-
ଯାଏ ! ରତମାର ମାତୃ-ହୃଦୟ ତାହା ଦେଖି ଦେଖି ଆତ୍ମସତ୍ତା
ହରାଇଦେଇ ଭାବେ—ଏ ପୁଣି କି ବିଚାର ! ପଞ୍ଜରା-ଥରା ଏକ ଦୀର୍ଘ
ନିଶ୍ୱାସ ପକାଇ କହେ—"ହେ ପ୍ରଭୁ !"

ଧରମୁ ବେଲବୁଡ଼ ସରିକି ଅସ୍ଥାରେ ପାଞ୍ଚୋଟି ଅଣା ପଇସା
ଧରି ଘରକୁ ଫେରି ରତମା ମୁହଁରେ ଦଣ୍ଡକ ପାଇଁ ଟିକିଏ ହସ
ଦେଖିବାକୁ ପାଏ—ସେଇଥିରେ ତା'ର ଶ୍ରାନ୍ତ କ୍ଳାନ୍ତ ଶରୀରର
ସମସ୍ତ ଅବସାଦ ଦୂର ହୋଇଯାଏ । କିନ୍ତୁ, ଛାତି ଭିତରେ ତା'ର
ଯେଉଁ ଅଲିଭା ଶିଖାଟି ଅହରହ ଜଳୁଥାଏ—ସେଇଟା ଆଜ ଲିଭି
ନାହିଁ ।

ରତମା ପିଠିରୁ ତା'ର ଝାଳ-ଧୂଳି ପୋଛି ଦେଇଦେଇ
କହେ—"ଏଁ, ଶୁଣୁଛ ! ଆମ ଝିଅଟା ପାଇଁ ଗୋଟାଏ କୁରୁତା
ସିଆଁ କରିଅ ନା !" ରତମାର ଶୁଖିଲା ମୁହଁକୁ ଚାହିଁ ଗୋଟିଏ
ଦୀର୍ଘନିଃଶ୍ୱାସ ପକାଇ ଧରମୁ କହେ—"ରତମ ! କହିପାରିବୁ, ଆମ
ଭଳି ଲୋକଙ୍କ ପକ୍ଷରେ ଝିଅର ବାପ-ମା ହେବା ଦେବତାର ଅଭି-
ଶାପ ନା ବରଦାନ ?" ରତମା ଛଳ ଛଳ ଆଖିରେ ତା'ର
ସ୍ୱାମୀର ମୁହଁ ଆଡ଼କୁ ଚାହିଁ ରହେ, କହେ—"ଆମ ବାବୁଆଣୀ-
ଙ୍କର ଅନେକ ଟଙ୍କା, ସୁନା ଅଛି, ନାହିଁ ? ସେଥିପାଇଁ ତାଙ୍କ
ଝିଅଁକୁ କେତେ ଗେଲବସରର କରିଛନ୍ତି—" ତା'ପରେ ଗୋଟିଏ
ଦୀର୍ଘନିଶ୍ୱାସ ଛାଡ଼ି ଛାତି ଭିତରଟା ଟିକିଏ ହାଲକା କରିଦେଇ ତା'ର

କଥାରେ ପୂର୍ଣ୍ଣଚ୍ଛେଦ ପକାଏ ।

ଧରମ୍ଭ ହାତପାପୁଲି ଦ'ଟାରେ ତାର ଶୁଖିଲା ଆଖି ଦୁଇଟିକୁ ଦଳିଦିଏ । ଦଣ୍ଡକ ପାଇଁ ଆଖିପତା ଗୁଡ଼ାକ ତା'ର ଓଦା ହୋଇ ଉଠେ । ସେ ଭାବେ—'ହାୟରେ ରତନୀ ! —ମାତୃତ୍ୱର ଦାବୀ ନେଇ ତୁ ଯେମିତି ଏ ଧରଣୀରେ ଜନ୍ମ ନେଇଛୁ—ବାବୁଆଣୀ ମଧ୍ୟ ସେହିପରି ଜନ୍ମ ନେଇଛନ୍ତି । କିନ୍ତୁ, ତୋର ଓ ତାଙ୍କ ଭିତରେ ରହିଛି ଏକ ବିରାଟ ବ୍ୟବଧାନ—ଆକାଶ ପାତାଳ ପରି ! ତୁ ଆସିଛୁ ତୋରି ରକ୍ତ ନିଗାଡ଼ିଦେଇ ବାବୁଆଣୀଙ୍କର ଗତିପଥକୁ ରଙ୍ଗିନ କରିଦେବା ପାଇଁ—ଆଜି ସେ ତୋରି ରକ୍ତରେ ଅଲତା ପିନ୍ଧି ରଙ୍ଗମଞ୍ଚରେ ଓହ୍ଲାଇଛନ୍ତି ତୋରି ରକ୍ତରେ ପୁଷ୍ଟ ଉର୍ବଶୀ ପରି ଚୁପ ହେବ ତୋରି ମାତୃବକ୍ଷର ମର୍ମନ୍ତୁଦ ହାହାକାର ବାବୁଆଣୀଙ୍କର ହାହାକାରକୁ ଧୋଇଦେଇ ରଖିଛୁ—ତେଣୁ ଆଜି ତାଙ୍କର ସ୍ମିତ ଗର୍ବରେ ଉଲ୍ଲସିତ ; ଅଧର ହାସ୍ୟରଞ୍ଜିତ ହୋଇଉଠୁଛି ।'

ଏତିକିବେଳେ ଛୁଆଟା ତା'ର କାନ୍ଦି ଉଠେ । ରତନୀ ଚୁଲାରେ କାଠ ଦ'ଟା ପକାଇଦେଇ ହାଣ୍ଡିଟା ବସାଉ ବସାଉ କହେ—"ଏଥି, ଛୁଆଟାକୁ ଟିକିଏ ଧରି ଦିଅନା ।"

ଧରମ୍ଭ ହୋ ହୋ ହୋଇ ହସିଉଠେ—'ରତନୀ, ଗରିବର ପୁଣି ସ୍ନେହ କ'ଣ ରେ ? ସେ ସବୁ କାଠ-ପାଷାଣଠୁ ଅଧିକ ହୀନ । ତାକୁ ସେହି ପରି ସ୍ଥିତିରେ ସବୁ ଲୁଚାଇ ରଖିବାକୁ ପଡ଼େ ରେ !' ନିଜେ ପୁଣି ଛୁଆଟାକୁ ଟେକି ଉଠାଇ ଆପଣାର ବେଦନାତୁର ସ୍ମୃତି ଭିତରେ ଭିଡ଼ିଧରି ମୁହଁରେ ତା'ର ଚୁମାଟିଏ ଦିଏ—ଆଉ ତା'ର ଅବୋଧ ଚାହାଁଣୀକୁ ନିର୍ନିମେଷ ନୟନରେ ଚାହିଁ ଭାବେ—'ହାୟରେ ଶିଶୁ ! କେଉଁ ପାପଫଳରେ ତୁ

ଏ ଅଭିଶପ୍ତ ଘରେ ଆସି ଜନ୍ମ ନେଲୁ ରେ ! ଅଜାଣତରେ ଆଖିରୁ ତା'ର ଦି'ଟୋପା ଲୁହ ଶିଶୁର କପାଳ ଉପରେ ଖସିପଡ଼େ ।

ଦି'ଦିନ ହେଲା ଧରମୁ କାମକୁ ଯାଇନି—ଛୁଆଟିର ଭୀଷଣ ଜର ଆଜି କାସ । ହଠାତ୍ ସେଦିନ ପ୍ରଭାତରୁ ସେହି ବାବୁ-ବଙ୍ଗଳାର ଉତ୍ସବର ବାଦ୍ୟନାଦ ଉଠିଲା । ଧରମୁର 'ହାଟି' ଘରକି ମୁହୂର୍ତ୍ତ ମୁହୂର୍ତ୍ତ କମ୍ପି ଉଠିଲା ସେହି ବାଦ୍ୟନାଦରେ—ତାର ଝାଟି କାନ୍ଥର ଭଙ୍ଗାମାଟି ଝର ଝର ହୋଇ ଖସିପଡ଼ିଲା । ବଙ୍ଗଳାର ବାତାୟନର ପଛପଟେ ଦେଖାଦେଲେ ବାବୁଆଣୀ—ଅପୂର୍ବରୂପ ଧରି । ତାଙ୍କର ଆଜି କି ଅପୂର୍ବ ବେଶଭୂଷା—କି ଛନ୍ଦମୟ ପଦଚାଳନା – କି ପ୍ରାଣ ଖୋଲା ହସ ! ସବୁ ମିଳି ଏକ ଉଲ୍ଲଟ ଦୃଶ୍ୟର ରୂପ ନେଇ ଛିଡ଼ାହେଲା ଧରମୁର କୁଟୀର-ଦ୍ୱାରଦେ । ଛତଗ-ଗଡ଼ୀଆଣୀ ଆୟା ମଧ୍ୟ ଆଜି ନୂଆ ଛିଟ୍ ଶାଢ଼ୀ ପିନ୍ଧିଛି । ଖୋକାର ବେକରେ ସୁନାର ହାର, ହାତରେ ସୁନାର ବଳା ! ରନ୍ଧାଘରୁ ଭାସି ଆସୁଛି ରାଜଭୋଗ ଖାଦ୍ୟର ସୁଗନ୍ଧ । କେତେ ଶହ ଅଶହ ଲୋକଙ୍କର ଯିବା ଆସିବା, ଖିଆପିଆର ଧୂମ ଲାଗିଲା—ଏଣେ କେତେ ମାଗିଖିଆ ବେଷଧର ପଛପଟେ ରୁଣ୍ଡ ହୋଇ ତାଙ୍କର ପ୍ରସାଦ କଣିକାଟିକୁ ଅପେକ୍ଷା କରି ବସିଥାଆନ୍ତି । ପତ୍ର ଖଣ୍ଡିଏ ପଡ଼ିଲାମାତ୍ରକେ ରୁଣ୍ଡ ହୋଇ ଛୁଟି ଯାଆନ୍ତି— ଯେ ଆଗ ପାଏ, ଝଟକିନା ଗୁଟିପକାଏ କେତେ ଆନନ୍ଦରେ । ଠିକାଦାରବାବୁଙ୍କ ଉତ୍ସବ ବିଭୋର ଦୃଷ୍ଟି ତାଙ୍କ ଉପରେ ଟିକିଏ ଢୋଳି ପଡ଼ିପାରେ ନାହିଁ । ଧରମୁ ତାର ଖୋଲଦ୍ୱାର ଫାଙ୍କ ଦେଇ ଏସବୁ ଦେଖେ—ଦୀର୍ଘନିଃଶ୍ୱାସଟାଏ ପକାଏ । ଆଜି ଯେ 'ଖୋକା' ର ଜନ୍ମଦିନ !

ଏଣେ ଏତେ ପର୍ଣ୍ଣକୁଟୀରରେ ଉତ୍ସବ ରଜନୀମଧ୍ୟରେ ଦେଖାଦେଲା ଏକ ଘନକୃଷ୍ଣ ବୈଶାଖର ପୁଞ୍ଜିଭୂତ ମେଘ—ଆଉ ଆସିଲା ଏକ ପ୍ରଚଣ୍ଡ ଘୂର୍ଣ୍ଣି ବାତ୍ୟାର ଉଦ୍ଦାମ ନର୍ତ୍ତନ । ରତମା ତା'ର ଛୁଆଟିକୁ କୋଳ ଭିତରେ ଧରି କାନ୍ଦି ଉଠିଲା—''ମୋ ଟିକିସଙ୍ଘୋଳିଆଟାରେ !"—ଧରମୁ ତା' ମୁହଁ ଉପରେ ହାତ ପକାଇ କହି ଉଠିଲା--''ନାହିଁ ରେ ନାହିଁ; ତୋର ପୁଣି ସଙ୍ଘୋଳି କ'ଣ ରେ ? ରତମା, ମୋର ଛୁଆଟା ଆଜି ଖାଇ ନାହିଁ କରେ ?"
ରତମା କାନ୍ଦି ପକାଇ କହେ--''ଟିକିଏ ଧରି ଦେଖ ନା, ଛୁଆଟାର ଦେହଟା କେମିତି ଖଇ ଫୁଟି ଯାଉଛି ।"

ଧରମୁ ବାଷ୍ପରୁଦ୍ଧ କଣ୍ଠରେ କହେ—''ଭଲ ହେଲାରେ ରତମା ଭଲହେଲା । ଆଜି ସେ ତାଙ୍କର ଉତ୍ସବର କୋଳାହଳ ତୋର ଆଉ ମୋର କ୍ରନ୍ଦନର ରବରେ ବୁଡ଼ିଯିବ ନାହିଁ—ବରଂ କୋଳାହଳକୁ ଦ୍ୱିଗୁଣ କରି ବଢାଇ ଦେବ । ସେମାନେ ଯେ ସେଇୟା ଚାହାନ୍ତିରେ ! ଅମର ଶୁଖିଲା ପ୍ରାଣଟାକୁ ନିଗାଡ଼ି ଦେଇ ତାଙ୍କର ଶେଷ ରକ୍ତ ଧାରରେ ମିଶାଇ ଦେଇ ସେମାନେ ଯେ ଦ୍ୱିଗୁଣ ତେଜରେ ଉଗ୍ରତର ହେବାକୁ ଚାହାନ୍ତି—ଆମରି ହାଡ଼ଗୋଡ଼ା ଉପରେ । ତାଙ୍କର ସୁଖର ହାସ୍ୟଧ୍ୱନି ସେ ଅମର ଦୁଃଖୀଟା ଶକ୍ଳାରିକୁ କେଉଁ ଅତଳସାଗରରେ ବୁଡ଼ାଇ ଦେଇ ଛୁଟିଚିବାକୁ ଚାହେଁ !"

ରତମର ପ୍ରାଣରେ ଧୀରେ ଧୀରେ ସେହି ଉତ୍ସବର ଭ୍ରତଧ୍ୱନି ଆଉ ଧରମୁର କରୁଣ ଆଳାପର ସୁର—ସବୁ ଲଭି ଆସେ । ଦଦନ ହେଲା ତା'ର ଛୁଆଟିର ବେରାମ । ଟୋପାଏ ଔଷଧ ମଧ୍ୟ ପାଇଁଚିରେ ପଡ଼ିନ । କପଟଭାବରେ ଛୁଆଟିକୁ ବଞ୍ଚାଇବ ସେ ! ରତମା

ଧରମୁର ହାତ ଦୁଇଟି ଧରି କାନ୍ଦ ପକାଇ କହେ—"ଶୁଣୁଛ ! ଥରେ ଦେଖିଲ ଯାଅ ସେହି ଶୀଦାନ ଡାକ୍ତର ପାଖକୁ. ପିଲାଟା ପାଇଁ ଟିକେ ହେଲେ ଔଷଧ ମାଗି ଆଣ ।"

ଧରମୁ ଏକ ଅଦ୍ଭୁତ ପୈଶାଚିକ ହସ ହସିଯାଏ । ମନେ ମନେ ଭାବେ—ରଜନୀ, ଏ ବିଶ୍ୱ ବକ୍ଷ ମଝିରେ ତୋର ଛୁଆର ସ୍ଥାନ ତୋର କୋଳଛଡ଼ା ଆଉ କେଉଁଠି ଯେ ନାହିଁରେ ! ଭଗବାନ ଯେ ଶରୀରର ମାୟାମମତାଟାକୁ ଜଉମୁଦ ଦେଇ ମା'ର ବୁକୁ ଭିତରେ ସାଇତି ରଖିଛନ୍ତି, ଏତେବେଳେ ଆଉ କିଏ ତୋ ଛୁଆକୁ ମୁହଁଟେକ ଦେଖିବରେ ! ତୋ ଛଡ଼ା ଯେ ଦୁନିଆର ଆଉ ସମସ୍ତେ ଦୁଆଳିଆ ହୋଇ ଯାଇଛନ୍ତି ।— ସେ ଆଉ ଭାବିପାରେ ନାହିଁ, ମୁଣ୍ଡ ଉପରେ ତା'ର ଆକାଶ ଭାଙ୍ଗି ପଡ଼େ ।

ପାଞ୍ଚଦିନ ଦିନ ଧରମୁ ସାଶ୍ରୁନୟନରେ ପିଲାଟିକୁ ନେଇ କାଳନଦୀ କୂଳରେ ଟେଲିପୋଲ ତଳେ ଗୋଟିଏ ପଳାଶଗଛ ମୂଳରେ ଧରଣୀମାତାର ବକ୍ଷରେ ଉପହାର ଦେଇ ଆସିଲା । ପାଞ୍ଚ ଦିନର କ୍ଷୁଧାଜର୍ଜରିତ ଶରୀରଟାକୁ ସେ କୌଣସି ପ୍ରକାରେ ଘେନି ଘୋଷାରି ଆଣୁ ଆଣୁ ଘରେ ତା'ର ଜୀବନ-ଲୀଳାର ଯବନିକା ଟାଣି ଦେଲା । —ଅନ୍ଧକାର—କାଳ କାଳ କାଳ ଅନ୍ଧକାର ମଧ୍ୟରେ ସେ ଆଉ ତାର ସ୍ତ୍ରୀ ପଙ୍କଜିନୀ ଯାଉ ଚାଲିଛନ୍ତି ମହାକାଳର ଗୁରୁଭାର ବହନ କରି ।—ଦୂରର ପଞ୍ଚାୟତର ଅଟ୍ଟାଳିକାରୁ ଲକ୍ଷ ଲକ୍ଷ ଚାଷୀ ତାଙ୍କୁ ହାତଠାରି ଡାକୁଛନ୍ତି, "ହେ ଅଭିଶପ୍ତ ଚାଷୀ, ଆମେ ସବୁ ଯେ ତୁମରି ସାଥୀ; ତୁମରି ପରି ଦେବତାଙ୍କ ଅଭିଶାପର ଗୁରୁଭାର ମୁଣ୍ଡରେ ଲଦି ଚାଲିଛୁ ।"

ଧରମୁର କୁଡ଼ିଆଘରୁ ଯେତେବେଳେ 'ମୋ ଧନରେ' ବୋଲି କନ୍ଦନର ସୁର କ୍ଷୀଣରୁ କ୍ଷୀଣତର ହୋଇ ଭାସିଆସେ, ବାବୁ-ବଙ୍ଗଳାରେ ସେତେବେଳେ ଗ୍ରାମୋଫୋନର୍ ସୁର ଲହରୀ ଉଚ୍ଛୁଳି ଉଠେ—'ପିୟା ମିଲନ୍ କୋ ଯାନା--ଆ···ଆ···'

ଠିକ୍ ଷ୍ଟେସନ ଆରପାଖ ପାହାଡ ତଳକୁ ପ୍ରକାଣ୍ଡକାୟ ଦୈତ୍ୟପରି କଳଘର କୃଷ୍ଣକାୟ ଚିମିନିଗୁଡ଼ିକ ଆକାଶକୁ ମୁଣ୍ଡ-ଟେକି ଧୂମ ଉଦ୍‌ଗାର କରୁଥିଲେ । ସେହି ବିସ୍ତୃତ କୃଷ୍ଣଧୂମରାଶି କୁଣ୍ଡଳାକୃତ ହୋଇ କ୍ରମେ କ୍ରମେ ଧୂସର ଅଭ୍ର ଧାରଣକରି ପ୍ରେତାତ୍ମା ପରି ମହାଶୂନ୍ୟରେ ଭାସି ଭାସି ଯାଉଥିଲେ । ଆଜି ତା'ର ଛାୟାତଳେ ବିରାଟ କଳଘର ଦଣ୍ଡାୟମାନ ହୋଇ ଲକ୍ଷ ଲକ୍ଷ ନିରୀହ ବ୍ୟକ୍ତିର ରକ୍ତଶୋଷଣ କରି ନିଜର ବର୍ଦ୍ଧନଶୀଳ କଳେବରକୁ ପୁଷ୍ଟ କରୁଛି । ଏହି ଦାନବରାଜ୍ୟର ହୁଙ୍କାରରେ ଲକ୍ଷ ଲକ୍ଷ ପ୍ରାଣୀଙ୍କର ହୃତ୍‌କମ୍ପ ଉଠେ । କଳଘରର ମାଲିକ ହାତରେ କାଉଁରି କାଠି ରହିଛି – ବୁଲାଇ ଦେଲାକ୍ଷଣି ସମ୍ମୁଖରେ ଆସି ଉଭାହୁଏ ଆଜ୍ଞାଧୀନ ଦେବାହୂତ । ଜିଜ୍ଞାସୁ ନୟନରେ ମାଲିକ ଆଡ଼କୁ ଚାହିଁ ପଚାରେ-- 'କ'ଣ ଲୋଡ଼ା ସାଆନ୍ତେ ?' ମାଲିକ ତାର ବିଶାଳଉଦରରେ ହାତ ବୁଲାଇ ହାଉମାରି କହେ—'ଲୋଡ଼ା ? —ଲୋଡ଼ା ଟଙ୍କା, ଅଜସ୍ର ଟଙ୍କା ?' ଦେବାହୂତ ଜଉଗୁଣି କହେ—'ଟଙ୍କା ! ତାହେଲେ ଦେ ସାଆନ୍ତେ, ଲକ୍ଷ ଲକ୍ଷ ପ୍ରାଣର ବଳିଦାନ ଲୋଡ଼ା !' ମାଲିକର ଅଙ୍ଗୁଳି ସଙ୍କେତରେ ଗୁରି-ଛ'ଅଣା ପଇସା ବିନିମୟରେ ଛୁଟି-ଆସନ୍ତି ଅସଂଖ୍ୟ ସର୍ବହରାର ଦଳ—ଧରମୁ ପରି ନିଜର କଳିଜା ଫାଡି ଉଟକାରକ୍ତ ଢ଼ାଳିଦେବା ପାଇଁ ।

"ହଜାର ହଜାର ନାରନ, ଲକ୍ଷ ଲକ୍ଷ ବୁଭୁକ୍ଷୁ, କୋଟି କୋଟି ବାସହରା ଧାଇଁ ଆସନ୍ତି, ଆକୁଳ ଆହ୍ୱାନ ଜଣାନ୍ତି ମାଲିକର ପଦତଳେ,—ହେ ପ୍ରାଣଦାତା, ତମର ବାହୁଚ୍ଛାୟା ତଳେ ଅନ୍ନ ଓ ଆଶ୍ରୟର ଭିକ୍ଷା ଗୃହୁଁ !" କେତେ ଆସନ୍ତି, କେତେ ଯାଆନ୍ତି—କେତେ ବଳର ମୂପକାଠରେ 'ଅନ୍ନ—ଆଶ୍ରୟ'ର ବୁଭୁକ୍ଷା ଶରଦନ ପାଇଁ ମେଣ୍ଟାଇ ଦଅନ୍ତି । ମାଲିକ ଏକ ବିଦ୍ରୂପର ଅଟ୍ଟହାସ ହସି ଭାବେ ,—"ଏମାନେ ଯେ ନାଡପ୍ରତ ଏଇପରି ଆସି ବଳର ମୂପକାଠରେ ସାନନ୍ଦରେ ଗଳା ବଢାଇ ଦଅନ୍ତି, ସ୍ୱା' ବ କଣ ତାଙ୍କର ଭାଗ୍ୟ ?'—ଲକ୍ଷ ଲକ୍ଷ ଶ୍ରମିକର ବୁକୁ ଉପରେ ସେ ବିଜୟ ଗର୍ବରେ ଚଳାଇ ନିଏ ତା'ର ରଥ—ସମସ୍ତ ଅଧିକାରର ଦାବୀ ଦେଇ ଛୁଡ଼ାହୁଏ ଯାଇ ସେହି ଅର୍ଦ୍ଧନଗ୍ନ ଅଶିକ୍ଷିତ ନାରନ କ୍ଷୁଧିତ ଜନତାର ମର୍ମରେ ଘାତ ଫୁଲାଇ !

ଧରମୁ ଏହି ଛଅଟି ଦିନ କାମକୁ ଆସି ନ ଥିଲା । ଘାତ ଭିତରଟା ଯେ ତା'ର ପୋଡିଜଳି ଯାଉଛି—ଯୁଧାରେ ଦେହଟା ଥରି ଥରି ଉଠୁଛି । ସେଦିନ କାମରୁ ଛୁଟିହୋଇ କୁଡ଼ିଆକୁ ତାର ଫେରିବାକୁ ବସିଛି, ମେନେଜର ସାହେବ ଡାକିଲେ—"ଶୁଣେ। ଧର୍ମୁ, ଏହି ଗୁଳବସ୍ତାଟା ନିଏ ଆମର ବାସାଯାଏ ଅଧିରି ! ଧରମୁ ମେନେଜରର ଆଦେଶ ନତମସ୍ତକରେ ସ୍ୱୀକାର କରି ଯାଇ ଗୁଳିତବର ଗୁଳ ବସ୍ତାଟା ପାଖକୁ ଗଲା, କିନ୍ତୁ ତାର ଶୋକା-କାତର ଆଉ କ୍ଷୁଧା-ଜର୍ଜର ଶରୀରର ଦୁର୍ବଳ ହାତ ଦୁଇଟି ଦେହ-ମହଣି ବୋଝ ଉଠାଇ ପିଠିରେ ଲଦି ପାରିଲା ନାହିଁ । ବ୍ୟର୍ଥ ଚେଷ୍ଟା କରି ବୋଝଟା ଉଠାଇବାକୁ ଯାଇ ନିଜେ ଗଡ଼ିପଡ଼ିଲା ।

ମେନେଜର ସାହେବ ପାର୍ଟି କରି ଉଠିଲେ—"ବେଟା ଶାଲା କୁଲ୍ ହୟେଛେ । ଏତଟୁକୁ କାଜ୍ କର୍ତେ ବେଟାର ଧାତ ଭେଙ୍ଗେ ଯାସ୍ଚେ । କୋନ୍ ନବାବେର ଛେଲେରେ ହାଁ ? ଭାଗୋ ନନ୍ସେନ୍ସ, ଷ୍ଟୁପିଡ୍ କୋଉଥାକାର । ଏଇ ଛୋଡ଼ା ନିୟେ କୁଲିଦେର ମହଲେ ଲଡ଼ାଇ କରେ, ବାଃ !......ଏଇ ମିଠୁଆ, ଶୁନୋ ଇଧର ! ଏଇ ଗୁଲି ବାସ୍ତାଟୋ ଲେକର ଆମାର ବାସାମେ ପୌଁଛୁ ଦେଗା, ସମ୍ଝା ।...ହୁଁଃ, ବେଟା ଗାଧା କୋଥାକାର ।"

ମିଠୁଆକୁ ଗୁରୁଦିନ ହେଲା ଜର—ତେବେ ମଧ୍ୟ ସେଇ ଜର ଦେହରେ କାମ କରିବାକୁ ଆସିଥିଲା । ନହେଲେ ନ ଚଲେ—ପାଞ୍ଚପ୍ରାଣୀ କୁଟୁମ୍ବ । ମିଠୁଆ ମଧ୍ୟ କମ୍ପି କମ୍ପି ଆସି ବସ୍ତା ପାଖରେ ଛିଡ଼ା ହେଲା । ତା' ଭାବଗତି ଦେଖି ମେନେଜର ସାହେବ ଅସ୍ଥିର ହୋଇ ଉଠିଲେ—"ନା, ନା ଏଦେର ଦିୟେ ଆର ହବେନା—ଏ ଶାଲାଦେର୍ କେ କାଲକେ ଛାଡ଼ାତେଇ ହବେ ।"

ହଠାତ୍ ଠିକାଦାର ସାହାବଙ୍କୁ ତଲପ ପଡ଼ିଲା । ତାଙ୍କ ଏଣ୍ଟିକୁ ଜର ହୋଇଛନ୍ତି । ତେଣୁ ସେ ଆଜି ଆସି ନାହାନ୍ତି । ଖବର ଶୁଣି ମେନେଜର ସାହେବ ବ୍ୟସ୍ତ ହୋଇ ପଡ଼ିଲେ—'ଏଇ ରେ, ଠିକାଦାର ତୋବି ନା ଏଲେ କାଜ୍ କେ ଚଲେନା-ଡାକୋ ଓର ବାସାୟ ଗେଛେନ ତ ଅଚ୍ଛା, ଓ ରେ ମ ଓରି ସାଧୋ, ଏଇ ବାସ୍ତାଟା ନିୟେ ଆମାର ବାସାୟ ପୌଁଛେ ଦେ ଏ ଆଦି—" ହେଲି ସେ ଠିକାଦାର ଡେଙ୍ଗା ଆଡ଼କୁ ଦ୍ରୁତଗତିରେ ଗାଡ଼ି ଚଳାଇଲେ ।

ଧରମ୍ କଲକା ପରି ଚିଅଇଦୋଇ ଭାବେ—"ହାୟରେ ହତଭାଗ୍ୟ କୁଲୀ! ଏହିପରି ଭବରେ କେବଳ ଖାଟି ଲାଞ୍ଛନା ପାଇବା ପାଇଁ ତମର ଜନ୍ମ। ରୋଗଶୋକ ମଧ୍ୟ ତମପାଇଁ ନାହିଁ। କେବଳ ତମେ ଜନ୍ମ ନେଇଛ ତମର ଜୀବନର ରସଧାରା ପଲେପଲେ ଢାଳିଦେବା ପାଇଁ—ତମର ମାଲିକର ପୁଞ୍ଜି ନିମନ୍ତେ। ତମର ଶୁଷ୍କ ନୀରକ୍ତ ଦେହର ବିନ୍ଦୁ ବିନ୍ଦୁ ରସ ଢାଳି ମାଲିକର ରୋପିତ ପୁଞ୍ଜି ବୃକ୍ଷଟିକୁ ପଲ୍ଲବ-ପୁଷ୍ପ-ଫଳରେ ପରିପୂର୍ଣ୍ଣ କରିଦେବ—ଏଇ ଯେ ତମର ପରମ ଧର୍ମ। ତମର ଜୀବନର ରସଧାରାର ଦାମ୍ ଯେ ମାଲିକର ଦରବାରରେ ଅତି ତୁଚ୍ଛ—ଅତି ନଗଣ୍ୟ।" ହଠାତ୍ ମିଠୁଆ ତାର ହାତଟି ଧରି ଟାଣିନେଇ କହେ—"ଧରମୁ ଭାଇ, ଘର ଚଲୋ।" ଧରମୁର ତନ୍ଦ୍ରା ଭାଙ୍ଗିଯାଏ।

ମେନେଜରର ଓପେଲ୍ ଗାଡିଖଣ୍ଡିକ ଧରମୁର ହାଟିଂ ସାମନାରେ ହର୍ଣ୍ଣ ଦେଇ ଛୁଟିଯାଏ—ଆଉ ଛିଡ଼ା ହୁଏ ଯାଇ ବାବୁ ବଙ୍ଗଳାର ଫାଟକ ସାମନାରେ। ଉତମା ମଟରର ହର୍ଣ୍ଣ ଶବ୍ଦ ଶୁଣି ଚମକି ଉଠି ପୁଣିଥରେ ଦ୍ୱାର ଫାଙ୍କରେ ଚାହେଁ ସେହି ବଙ୍ଗଳା ଆଡ଼କୁ। ଆଜି ସକାଳୁ ସେ ଦେଖୁଛି, କେତେ ବାବୁ ଆସୁଛନ୍ତି ଆଉ ଯାଉଛନ୍ତି। କିଏ ବା ଖୋକାର ମା'କୁ ସାନ୍ତ୍ୱନା ଦେବାରେ ଲାଗି ପଡ଼ିଛନ୍ତି—କେହି ବା ଗୋଟିଏ ସୁନ୍ଦର ଲାଲ ମଖମଲର ପୋଷାକ ଖୋକାକୁ ପିନ୍ଧାଇ ଦେଉଛି। ଛତିଶଗଡଆଣୀ ଆୟା ଆଜି ବିଜୁଳି ପରି ଏପାଖ ସେପାଖ ହେଉଛି। ସକାଳୁ ଏମାନେ ଡାକ୍ତର କେତେଥର ଯେ ଆସିଲେଣି ତା'ର ଠିକ୍ ନାହିଁ। [illegible] ନର୍ସ କି ଡାକ୍ତରଙ୍କର ଔଷଧ ନେଇ ଖୋକା ପାଖରେ ଅନବରତ

ବସି ରହୁଛି । ରତନୀ ତା' ପଡ଼ୋଶୀ ଯମୁନା ମାଆଙ୍କୁ ପଚାରି
ବୁଝିଥିଲା ଯେ ଠିକାଦାରବାବୁଙ୍କ ପିଲାଟିକୁ ଜର ହୋଇଛି । ସେ
ସେହିଦିନୁ ମୂକହୋଇ ବସିରହି ଚାହିଁ ରହୁଥାଏ ସେହି ବଙ୍ଗଳା
ଆଡକୁ । କେତେବେଳକେ ହଠାତ୍ କ'ଣ ହେଲା କେଜାଣି ଭୂତ
ଲାଗିଲା ପରି ଦଉଡ଼ିଗଲା ତା'ର ଭଙ୍ଗା ପେଡ଼ିଟା ପାଖକୁ, ଆଉ ତା
ଭିତରୁ ତା'ର ପିଲାଟିର ଜାପାନୀ ଖେଳନା ଖଣ୍ଡି ବାହାର କରି
ଦଣ୍ଡେ ଦେଖିଲା, ଆଉ ସେଇଟା ଛାତି ଉପରେ ଚାପି ଧରି କାନ୍ଦି
ଉଠିଲା—'ମୋ ଧନ କୁଆଡ଼େ ଗଲୁରେ ମୋ ଅନ୍ଧର ଲଉଡ଼ି...'

ଧରମୁ ମିଠୁଆ କାନ୍ଧରେ ଭରାଦେଇ ଟଳାଟଳ ଆସି ଦେଖେ—
ଘରର ତା'ର ଏଇ ଅବସ୍ଥା ! ସେ ରତନୀ ପାଖକୁ ଯାଇ ଡାକେ—
"ରତନି !" ରତନୀ ଧରମୁର ଡାକ ଶୁଣି ବାଘୁଣୀ ପରି ଧାଇଁଯାଇ
ତା'ର ଛାତି ଉପରେ ପଡ଼ି କାନ୍ଦି ପକାଇ କହେ—"ମୋ ଧନ ଯେ
ଠକଦେଇ ଚାଲିଗଲା । ବର୍ଷା ଆଉ ଝୁଲକା ପବନ ଲାଗି ଯେଉଁ
ଜର, କାଶ ହେଲା ଆଉ ସେ ଛାଡ଼ିଲା ନାହିଁ ! ତା' ପାଇଁ ଯେ
ଔଷଧ ଟୋପାଏ ମିଳିଲା ନାହିଁ !"

ଧରମୁ ପ୍ରକୃତିସ୍ଥ ହୋଇ କହେ—"ରତନି, ଏଇ ସହ-
କୁଡ଼ିଆର ଫାଙ୍କରେ ଯେ ଆମର ପୋଷା ଚଢ଼େଇ ଉଡ଼ି ଚାଲିଗଲା ।
ତାକୁ କେମିତି ରଖିଥାନ୍ତୁରେ ଏ ଭଙ୍ଗାଘରେ ବାନ୍ଧକରି ।" ସେ
ମିଠୁଆର ହାତ ଛାଡ଼ିଦେଇ ମୁଣ୍ଡରେ ହାତଦେଇ ବସିପଡ଼ି ଭେଁ ଭେଁ
କରି କାନ୍ଦି ଉଠିଲା । ମିଠୁଆ ଏ ଶୋକ ବିହ୍ୱଳ ଦମ୍ପତିଙ୍କ କରୁଣ-
ବିଳାପ ଶୁଣି ଅଧୀର ହୋଇ ପଡ଼ିଲା । ସେ ଅଶ୍ରୁସଜଳ ନୟନରେ
ଧରମୁକୁ ଉଠାଇ ଘର ଭିତରକୁ ନେଇ ଯାଇ କହିଲା, "ଧରମୁଭାଇ

ସେମନେ ସେ କା ହୋଗା—ହାମ୍ ଲୋଗୋଁକା କପାଲ ହୈ ।" ଧରମୁ ତା' କଥାରେ କାନ ନ ଦେଇ ବାବୁବଙ୍ଗଳା ଫାଟକ ପାଖରୁ ମେନେଜରଙ୍କର କାରଟା ଆଡ଼କୁ ଉଦାସ ଦୃଷ୍ଟିରେ ଚାହିଁ ଚାହିଁ ଭାବେ—ଅତୀତ କାରଖାନାର କଥାଗୁଡ଼ାକ । ସେମାନେ କୁଲି ଆଜି ସେ କାରଖାନାର ମେନେଜର, ଦୁହେଁଯାକ ସମାନ ଭାବରେ ଗୋଲାମୀ କରନ୍ତି, କିନ୍ତୁ ଦୁହିଁଙ୍କ ମଧ୍ୟରେ କି ବିରାଟ ବ୍ୟବଧାନ !

ପରଦିନ ଧରମୁ ଯେତେବେଳେ କାମରୁ ଫେରିଲା—ସେତେ-ବେଳକୁ ସଂଧ୍ୟା । ଆକାଶରେ ତାରା ଗୋଟି ଗୋଟି ହୋଇ ଦେଖା ଗଲେଣି । ସେ ଛିଣ୍ଡା ଗଞ୍ଜିଗଣ୍ଡିକ ଦେହରୁ ଖୋଲି ବାଉଁଶ ଦଣ୍ଡାରେ ଝୁଲାଇଦେଇ ଗାମୁଛାଟା ଟାଣିନେଇ କାନ୍ଧରେ ପକାଇଲା ଆଉ ଦୀର୍ଘନିଃଶ୍ୱାସଟାଏ ପକାଇ କହିଲା—"କାଲିଠାରୁ ମୋର କାମକୁ ଯିବା ବନ୍ଦ ହେଲା ରତନି । ଆଜି ଠିକାଦାରବାବୁ ଜବାବ ଶୁଣାଇ ଦେଲେ ।"

ରତନୀ ଏହା ଶୁଣି ମୁଣ୍ଡରେ ବଜ୍ର ପଡ଼ିଲାପରି ତାଟକା ହୋଇ ଧରମୁକୁ ଚାହିଁ ରହିଲା—ମୁହଁରୁ ପଦେ କଥା ତା'ର ବାହାରିଲା ନାହିଁ । କିଛିକ୍ଷଣପରେ ମୁହଁରୁ ହାତ ପୋଛି ପଚାରିଲା, "ତମର ଦୋଷ କ'ଣ ହେଲା ଯେ ତମକୁ କାମରୁ ଛଡ଼େଇଦେଲେ ?"

ଧରମୁ ଅତି ବିକୃତକଣ୍ଠରେ କହିଲା,—"ଦୋଷ ଆଉ କ'ଣ ? ସମସ୍ତଙ୍କ ସାଙ୍ଗରେ ମିଳି ମିଶି ରହିବାଟା ହେଲା ମୋର ବଡ଼ ଅପରାଧ । ସେଠର ଯେଉଁ ଦୁଇନମ୍ବର ହାଟିଂ ପୋଡିଗଲା—ସେଇ ଜଳନ୍ତା ଘରୁ ହରିସାହୁର ଛୁଆଟି ବାହାର କରି ଆଣିଥିଲି

ବୋଲି ଆଖପାଖ ସବୁ କୁଲିଯାକ ସେଇଦିନୁ ମୋତେ ବଡଭାଇ ପରି ମାନନ୍ତି । ସେଥିପାଇଁ ମେନେଜରର ସନ୍ଦେହ ଯେ ମୁଁ ମେଳି-କରି ତାଙ୍କ କାମ ବନ୍ଦ କରିବାକୁ ଯାଉଛି ।" ଧରମୁର କଥା ନ ସରୁଣୁ ହରି, ମିଠୁଆ, ବେମା ପ୍ରସାଦ, ଶଙ୍କରା ପ୍ରଭୃତି ଦଶ ବାର ଜଣ କୁଲି ଆସି ଧରମୁ ଦୁଆରେ ପହୁଞ୍ଚିଲେ । ହରି ଆଗପଛ ହୋଇ କହିଲା—"ଧରମୁ ଭାଇ, ଆଜି ଆମେ ତମ କତିକୁ ଶେଷ ଥର ପାଇଁ ଆସିଛୁଁ । କ'ଣ କହୁଛ କୁହ । ଆମେ ଆଉ ଅପେକ୍ଷା କରିବୁ ନାହିଁ, କାଲିଠୁ ଧର୍ମଘଟ ଆରମ୍ଭ କରିଦେବୁ । କେବଳ ତମର ଆଦେଶ ମାନି ଆମେ କିଛି କରୁ ନ ଥିଲୁ । ଏଇ ତ ଦେଖୁଛୁ ଶଙ୍କରା, ଗୋପୀଆ, ରାମଦାନ ହେଉ ହେଉ ତମପରି ଲୋକଙ୍କୁ ମଧ୍ୟ କାମରୁ ବାହାର କରାଗଲା, ଆମେ ଆଉ କେତେ-ଦିନ ସହିବୁ ? ଆଜି ତମଠି ଶେଷ ନିଷ୍ପତ୍ତି କରିବାକୁ ଆସିଛୁ ।"

ଧରମୁ ସେମାନଙ୍କୁ ସାନ୍ତ୍ୱନା ଦେବାକୁ ଯାଇ କହିଲା—"ଦେଖ ହରି, ମୋ' କପାଳରେ ଯାହାଥିଲା ହେଲା । ତମେସବୁ ଖାଲି ମିଛଟାରେ ନିଜ ଉପରକୁ କାହିଁକି ବିପଦ ଡାକି ଆଣିବ କହିଲ ? ଉପରେ ଭଗବାନ ସବୁ ଦେଖୁଛନ୍ତି—ସେଇ ଏକା ବିଚାର କରିବେ । ଏ ସଂସାରରେ ପୁଣି ଠିକିଏ ସହିବୋଲି କାମ କରି ଯିବାଟା ହେଉଛି ବୁଦ୍ଧିମାନର କାମ । ଗଣ୍ଡଗୋଳ କରି କିଛି ଲାଭ ନାହିଁ । ଯାହା କର ପଛକେ କିନ୍ତୁ ଶେଷରେ ଦେଖିବ—ଯେତେ ଝଡ଼ଝଞ୍ଜା ସବୁ ଗରିବଙ୍କ ମୁଣ୍ଡ ଉପରେ ବୋହିଯିବ । ସେଥିରେ ପଣି କିଛି ଲାଭ ନାହିଁ ଭାଇ । ତୁମେ ସବୁ ମୁଣ୍ଡ ଠିକ୍ କରି ନେଇ କାମରେ ଯାଇ ଲାଗ । ମୋ ପାଇଁ ଭାବ ନାହିଁ—ଏ ତ ନିତି ଦିନିଆ ଦୁନିଆର ଜଣାଶୁଣା ଘଟଣା ।

ହରି ପ୍ରଭୃତି ଭୁନିଭାନ ହୋଇ ଗୁଲିଗଲେ—କିନ୍ତୁ ଘଟି ଭିତରେ ତାଙ୍କର ଯେଉଁ ନାଆଁଟା କୁହୁଳି କୁହୁଳି ରହିଥିଲା ସେ ଇଟା ହୁହୁ ହୋଇ ଜଳି ଉଠିଲା । ଯାଉଁ ଯାଉଁ ରାସ୍ତାରେ ହରି ତାର ସଙ୍ଗୀଙ୍କୁ ଲକ୍ଷ୍ୟ କରି କହିଲା—"କହିଲ ଭାଇ, ବେନୀପ୍ରସାଦ, ଧରମା ଭାଇ ମଣିଷ ନା ଦେବତା ?"

ଧରମୁ ନାନା ଚେଷ୍ଟା କରି ମଧ୍ୟ କେଉଁଠି ହେଲେ ଗୋଟାଏ କାମର ଯୋଗାଡ଼ କରି ନ ପାରି ହତାଶ ହୋଇ ପଡ଼ିଛି । ଆଜିକୁ ସ୍ତରିଦନ ହେଲା ଓଳିଏ କରି ଭାତ ଉପା ହୋଇଛି । ସେଠ ଦୋକାନୀଟା ଭାରି ଭଲ ମଣିଷ, ହେଲେ ମଧ୍ୟ ତାକୁ ଦୋଷ ଦେଇ ହେବ ନାହିଁ । ନିଜ ବଗୁରା ତାର ସାନ କଲିଜାରେ କେତେ ଦମ୍ଭ ରଖିବ । ଆଜି ସେ କହିଦେଇଛି—ଆଉ ଚଳାଇ ପାରିବ ନାହିଁ । ଧରମୁ ଯେ ଦନେ ବୋଲି ତାର ପଇସା ବାକି ରଖିନାହିଁ, ଏଇଥିପାଇଁ ତାକୁ ଏଇ କେତେଦିନ ଯେମିତି କେମିତି ଚଳାଇଦେଲା—ଏଣିକି ଆଉ ପାରିବ ନାହିଁ ।

ବାକି ରହିଲେ ସାଙ୍ଗ ପଡୋଶୀ ହରି, ଶଙ୍କର, ମିଁଟୁଆ ପ୍ରଭୃତି ତାଙ୍କର ବା ସାହସ କେତେ । ପୂରା ଦୁଇଓଳି ନିଜର କୁଟୁମ୍ବକୁ ଚଳାଇଲାବେଳକୁ ତାଙ୍କ ମୁଣ୍ଡ ବୁଲିଯାଏ । ସେମାନେ ବା କେତେଦିନ ଆଉ ଏମିତି ନିଜ ମୁହଁରୁ ତା ସଙ୍ଗେ ଆପଣା କୁଟୁମ୍ବ ମୁହଁରୁ ଭାତଗୁଣ୍ଡା ଉଠାଇ ଆଣି ଧରମୁକୁ ସାହାଯ୍ୟ କରିବେ ।

ଶେଷରେ ଧରମୁ ନିହାତି ନିରୁପାୟ ହୋଇ ନିଜମସ୍ତିକରେ ଯାଇ ଛୁଟାହେଲା କାରଖାନା ସୋସାଇଟିର କର୍ମକର୍ତ୍ତା ନିକଟରେ ।

ସେ ତ କାମରେ ଥିଲାବେଳେ ମାସକୁ ଗ୍ଭରଅଣା ପଇସା ଦେଇ ଥିଲା ସୋସାଇଟି ପାଇଁ । ଆଜି ସେ ନିଷ୍କର୍ମା—ତେଣୁ ସେ ଆଜି ସୋସାଇଟିର ଦ୍ୱାରସ୍ଥ । ନାନା ପ୍ରକାର କାକୁତି ଜଣାଇ ଧରମୁ କର୍ମକର୍ତ୍ତାଙ୍କ ନିକଟରେ ତାର ବିପଦ ଜଣାଇ ଗ୍ଭରିଶଟି ଟଙ୍କା ଧାର ଗ୍ଭହିଁଲା । ଶେଷରେ ଅତି କୁଣ୍ଠିତହୋଇ କହିଲା—"ଦେଖନ୍ତୁ ଆଜ୍ଞା, ଆଜିକୁ ଅଠବର୍ଷ ହେଲା ଏଇଠି ରହୁଛି । ଭଗବାନଙ୍କ ଦୟାରେ କେବେ କାହାର ନିକଟରେ ହାତ ପାତି ନାହିଁ । ନିଜର ହାତ ଖଟାଇ ଜୀବିକା ଅର୍ଜିଛି । ଆଜି ନିହାତି ହୀନ ଅବସ୍ଥାରେ ପଡ଼ି ଆପଣଙ୍କର କୃପାପ୍ରାର୍ଥୀ । ସେଥିକୁ ଆପଣଙ୍କ ଦୟା ।

ସୋସାଇଟିର ବାବୁଟି ହେଁ ହେଁ ହୋଇ ହସିଦେଇ କହିଲେ—ସବୁ ବୁଝିଲି ଧରମୁ । କିନ୍ତୁ ମୁଁ କ'ଣ କରିବି—ନାଗ୍ଭର ! ସୋସାଇଟିର କଡ଼ା ନିୟମ ଶୃଙ୍ଖଳା ଅଛି । ତୁମି କାଜେ ଥାକିଲେ ଟାକା ଦେୟା ହୋତୋ । ତୁମେ ଯେ ଆର କାଜେ ନାହିଁ । ଏରକମ ଟାକା ତ ଆର ଧାର ଦେୟା ହୟନା । ତୁମି ତ ସବ୍ ବୁଝିଛ ଧରମୁ, ମୁଁ କ'ଣ କହିବି ।

ଧରମୁ ସବୁ ବୁଝେ—କିନ୍ତୁ କ'ଣ କରିବ ! ଉପାୟ ନାହିଁ । କ୍ଷୋଭ ଓ ଅଭିମାନରେ ଧରମୁର ଛାତିଟା ଫାଟିପଡ଼ିବାକୁ ବସିଲା । ଶତ ଚେଷ୍ଟାକରି ମଧ୍ୟ ସେ ଆଉ ପଦେ କଥା କହିପାରିଲା ନାହିଁ । ନତମସ୍ତକରେ ସୋସାଇଟିର ଅଫିସଘରୁ ବାହାରି ଆସିଲା । ଧରମୁ ଆଜି ବିଶ୍ୱ-ସଂସାରରେ ପାଗଳ । ଗରିବ ହେଲେ ମଧ୍ୟ ସେ ତ ଦିନେ ମଣିଷ ଥିଲା । ଆଜି ମିଲ କାମରୁ ବାହାରି ଯାଇ ଅକର୍ମା ହୋଇ ପଡ଼ିଛି,—ହେଲେମଧ୍ୟ ସହିବାର ତ ଗୋଟାଏ ସୀମା ଅଛି । ସେ କେବେହେଲେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା ଯେ କେବେ ପୁଣି

ସେ ଅନାହାର ଅର୍ଦ୍ଧାହାରରେ ଦିନ କଟାଇବ—ପୁଣି ତାକୁ ଭିକ୍ଷୁକ ପରି ସୋସାଇଟି ଘରେ କାରୁଣ-ବିଳାପ କରି ସୁଦ୍ଧା ହତାଶ ହୋଇ ଫେରିବାକୁ ପଡ଼ିବ । ଦୁସ୍ଥ ଦରିଦ୍ର ଲୋକଙ୍କୁ ସାହାଯ୍ୟ କରିବାକୁ ଯେଉଁ ସମିତିର ମୂଳଦୁଆ ଗଢ଼ା—ତାର ପୁଣି ଗୋଟାଏ ନିୟମ ଶିଙ୍ଖଳ ! ଧରମୁ ଶୁଷ୍କମୁଖରେ ଘରେ ପହଞ୍ଚିଲାବେଳକୁ ରତନୀ ତାର ବାଟଚାହିଁ ବସିଥାଏ । ସେ ଧରମୁ ମୁହଁରୁ ସବୁ ଶୁଣି ଆର୍ତ୍ତନାଦ କରିଉଠେ । ଆଖି ଦୁଇଟିରୁ ତା'ର ଲୁହ ଝର ଝର ହୋଇ ଖସିପଡ଼େ ।

“ତାହାହେଲେ ଆମେ କ'ଣ କରିବା ! ବାବୁମାନେ ବୋଧ ହୁଏ ଆମକୁ ଏଇଠି ଏହିପରି ଭାବରେ ଶୁଖି ଶୁଖି ମରିବାର ଦେଖିବାକୁ ଚାହାନ୍ତି । ସୋସାଇଟି ନୁହେଁ ତ, ଖାଲି ଜୁଆ-ଚୋରଙ୍କ ଅଡ୍ଡା ! ସେଇଥି ପାଇଁ ଡାକ ଢୋଲ ବଜାଇ କୁହା-ହେଉଥାଏ—'ଆଉ ତୁମର ଚିନ୍ତା ନାହିଁ—ରୋଗଶୋକରେ ପଡ଼ି ଅକର୍ମା ହୋଇ ବସି ରହିଲେ ମଧ୍ୟ ଆମେ ତୁମକୁ ସାହାଯ୍ୟ କରିବୁ । ଏହା ସବୁ ଭେଲଅମୁଣ୍ଡିଆ ଧୋବଧାଉଳିଆଙ୍କ ବେଇମାନି । ହଉ, କୁଲିମାନଙ୍କର ପରା ଗୋଟାଏ ସଭା ଅଛି—ସେଇଠାକୁ ଥରେ ଯାଅ ନା ?”

“ବୁଝିଲ ରତନି, ଏତେଦିନ ହେଲା ଏତେ କଷ୍ଟରେ ପଡ଼ି ମଧ୍ୟ ମୁଁ କାହିଁକି ସେଠାକୁ ଯାଉନି ! ସେଠାକୁ ଗଲାକ୍ଷଣି ସେମାନେ କହିବେ ଆସ ଧର୍ମଘଟ କରିବା—ସତ୍ୟାଗ୍ରହ କରିବା । କିନ୍ତୁ ତୁ ତ ଜାଣୁ ରତନି, ଏସବୁ କାମ ମୁଁ ଏହାବେଳକେ ପସନ୍ଦ କରେ ନାହିଁ ।

"କିଛି ପାରିବ ନାହିଁ ତ କହିବ କ'ଣ ? କେବଳ ଉପାସ କରି ରହିପାରିବ ?"

ଧରମୁର କଣ୍ଠ ରୁଦ୍ଧ ହୋଇଆସେ । ସେ ତା'ର ଉଦ୍‌ଗତ ଦୀର୍ଘ ନିଃଶ୍ୱାସଟାକୁ କୌଣସିପ୍ରକାରେ ଦବାଇରଖି କହେ— "ରତନ, ସବୁ ଜାଣିସୁଦ୍ଧା କାହିଁକି ମୋତେ ଏମିତି କହୁ । ମୁଁ ନିଜେ ମଧ୍ୟ ବୁଝିପାରୁ ନାହିଁ ରତନ, କାହିଁକି ସେ ବାଟରେ ପାଦ ବଢ଼ାଇବାର କ୍ଷମତା ମୋର ଆଦୌ ନାହିଁ ।"

ଏଇ କଥାପଦକରେ ରତନାର ନାରୀପ୍ରାଣର କେଉଁ ଏକ ଗୋପନ କୋମଳତନ୍ତ୍ରୀରେ ଅଘାତ ଲାଗେ । ପ୍ରସାରିତ ଭୁଜ-ବନ୍ଧନରେ ସେ ସ୍ୱାମୀକୁ ତା'ର ଛାତି ଭିତରେ ଭିଡ଼ିଧରି କରି କରି ହୋଇ କାନ୍ଦି ଉଠେ,—"ମୁଁ ସବୁ ଜାଣେ ଗୋ, ସବୁ ଜାଣେ !— ନିସ୍ୱାର୍ଥ ସ୍ୱାମୀ ଯେ ମୋର ମାଛିଟାକୁ ମାରି ବୋଲି କହନ୍ତି ନାହିଁ— ସେକଥା ମୋ ଠାରୁ ଆଉ ବେଶୀ ଜାଣେ କିଏ ? କିନ୍ତୁ ଏ ଜଗତରେ ଯେ ଏଇ ନିସ୍ୱାର୍ଥତାର ଆଦର ନାହିଁ ! ହଉ,—ମୁଁ କାଲି ନିଜେ ଯିବି ସେଇଠାକୁ !"—

—"ତୁ ଯିବୁ ରତନ ?" ଧରମୁ ଅସ୍ଥିର ହୋଇ ପଚାରିଲା । "ତୁ ଗଲେ ଯେ ମୋର ସବୁ ସରିଲା । ନା, ମୁଁ ଏଇଲାଗେ ନିଜେ ଯାଉଛି"—କହି ଧରମୁ ସେଇ ସନ୍ଧ୍ୟା ଅନ୍ଧାରରେ ଶ୍ରମିକସଂଘର କୁଡ଼ିଆ ଆଡ଼କୁ ଚାଲିଗଲା ।

ଶେଷରେ ଶ୍ରମିକ ସଂଘର ଚେଷ୍ଟାରେ ଧରମୁ କିଛି କିଛି ସାହାଯ୍ୟ ପାଇ ପାରିଲା—କିନ୍ତୁ ତାହା ମଧ୍ୟ ତ ପ୍ରଚୁର ନୁହେଁ !

ସେଥିରେ ଦ'ଓଳି ଦ' ଜଣଙ୍କର ପେଟ ଭରିବା ବି ଏକା-
ବେଳେକେ ଅସମ୍ଭବ ।

କୋଉଏ ଦିନ ପର କଥା । ଖାଦାନ କଳଘରସବୁ ଆଜିକୁ ଦ'ଦିନ ହେଲା ବନ୍ଦ । କୁଲି ମଜୁରିଆ ସଭିଏଁ ଧର୍ମଘଟ କରି କାମ ବନ୍ଦ କରି ଦେଇଛନ୍ତି । ହରି ଏଇ ଧର୍ମଘଟର ପ୍ରଧାନ ନେତା—ତାକୁ ନେଇ ଏଇ କୋଉଏଟି ଦିନ ମଧ୍ୟରେ ଗୋଟାଏ ବିରାଟ ଦଳ ଛିଡ଼ା ହୋଇଛି । ତାଙ୍କର ଏ ଅଭିଯାନ ମାଲିକର ବିରୁଦ୍ଧରେ ନୁହେଁ—କେବଳ ତାଙ୍କର ନିଜର ଅଭାବ ଓ ଅଭିଯୋଗ ଜଣାଇ ତା'ର ପ୍ରତିକାର ପାଇବା ପାଇଁ ସେମାନେ ଏ ଦଳଗଠନ କରି ଧର୍ମଘଟ ଆରମ୍ଭ କରିଥିଲେ । କିନ୍ତୁ ମେନେଜର ସାହେବ ଏ ଦଳର ଅଭିଯାନ ଦେଖି ବିଚଳିତ ହୋଇ ପଡ଼ିଲେ । ଭାବି କିଛି ଠିକ୍ କରି ପାରିଲେ ନାହିଁ । ସବୁ କୁଲିଯାକ ଯଦି ଏକଯୋଟ ହୋଇ ଗୋଟାଏ କିଛି ଦାବି କରି ବସିବେ—ତା'ହେଲେ ମାଲିକ ତେ ତାହା ମାନିବାକୁ ବାଧ୍ୟ ହେବ ! ଗୁଡ଼ାଏ ଟଙ୍କା ତାର ଫାଙ୍କେ ଫାଙ୍କେ ଉଡ଼ିଯିବ । ଏହି ସନାତନ ପନ୍ଥାକୁ ଏମିତି ସହଜରେ କରିଛାଡ଼ା କରିଦେବା ମେନେଜରଙ୍କ ନାଡ଼ି ନକ୍ଷତ୍ରରେ ନ ଥିଲା । ତେଣୁ ସେ ତାର କରି ବମ୍ବେରୁ ବଡସାଇବ ମାଲିକଙ୍କୁ ଅଣାଇଛନ୍ତି ।

ସଂଧ୍ୟା ହୋଇ ଯାଇଥାଏ । ଶ୍ରମିକସଂଘ କୁଡ଼ିଆଟିରେ ପ୍ରାୟ ଶହେ ଭିତରେ ଶ୍ରମିକ ରୁଣ୍ଡହୋଇ ଅଫିସରମାନଙ୍କ ଘର ପାଖରେ ସତ୍ୟାଗ୍ରହ କରିବାର ଆଲୋଚନାରେ ଥାଆନ୍ତି, ବଡ଼ ସାହାବଙ୍କ ଚପରାସି ଆସି ହରିକୁ ଡାକି କହିଲା, "ସାହାବ ମେନେଜର ଉପରେ ବଡ଼ ରାଗି ଯାଇଛନ୍ତି । ସେ ତମ ସହିତ ପରାମର୍ଶ କରି ଶ୍ରମିକମାନଙ୍କ ସହିତ ଗୋଟାଏ ଆପୋଷ ମୀମାଂସା କରିବାକୁ ଚାହାନ୍ତି, ତେଣୁ

ତୁମକୁ ଡାକୁଛନ୍ତି ।" ଏହା ଶୁଣି କେତେକ ପାଟିଙ୍କର ଉଠିଲା—
"ରଖା-ହା ତମର ସାହେବ—ଆମେ କିଛି ଶୁଣିବୁ ନାହିଁ, ତମେ ଯା'
ବାହାର ।" କିନ୍ତୁ ହରି ସମସ୍ତଙ୍କୁ ସାନ୍ତ୍ୱନା ଦେଇ କହେ—"ଆଚ୍ଛା,
ସାହେବ ଯେବେ ଡାକୁଛି, ମୁଁ ଶୁଣି ଆସେ । ତା'ର ମତଲବ କ'ଣ !
ଯଦି ଭଲରେ ଭଲରେ ଆମ କାମ ହାସଲ ହୋଇଯାଏ ତା'ହେଲେ
ମିଛଟାରେ ଉଲ୍‌ଲୁଫ୍ କରିବା କିଆଁ !" ଏଥିରେ ଅନେକ ସନ୍ତୁଷ୍ଟ
ହୁଅନ୍ତି, କେତେକ ହୁଅନ୍ତି ନାହିଁ; କିନ୍ତୁ ନେତାର ଆଦେଶ ମାନି-
ବାକୁ ଯାଇ ପ୍ରତିବାଦ ନ କରି କହନ୍ତି, "ହଉ ଯାଅ କିନ୍ତୁ ଆମେ
ତମର ଅପେକ୍ଷାରେ ଏଇଠି ବସି ରହିଲୁ । ତମେ ନ ଫେରିଲେ
ଆମେ ଏଠାରୁ ଉଠୁନୁ ।"

ହରି ଚପରାଶୀ ସହିତ ଯାଇ ସାହେବଙ୍କ ନିକଟରେ ପହଞ୍ଚି
ସଲାମ କରି ଛିଡ଼ା ହେଲା । ମେନେଜର ତାକୁ ଦେଖି ଘୃଣାରେ
ମୁହଁ ବୁଲାଇ ନେଲେ । ସାହେବ ହରିକୁ ଦେଖି ସଗିଜଠି କେତେ
କ'ଣ କହି ଗର୍ଜିଗଲେ । ତା'ପରେ ଅନେକ ବୁଝାଇ ସୁଝାଇ
ଶେଷରେ ପକେଟରୁ ପିସ୍ତଲ ବାହାର କରି ଚରମ ନିଷ୍ପତ୍ତି ଜଣାଇ-
ଦେଇ କହିଲେ—"ଦେଖୋ ହରି, ଅଭୀ ହାମ୍ ଟୁମ୍‌କୋ
ପସନ୍ଦ୍‌କରଟା ହାୟ୍ । ହାମ୍ ଟୁମ୍‌କୋ ମାଇନା ବଡ଼ା ଦେଗା,
ଅଚ୍ଛା ନୌକରି ଦେଗା—ଟୁମ୍ ଷ୍ଟ୍ରାଇକ୍ ବନ୍ଦ କର୍‌ଦୋ ।"

ହରି କିନ୍ତୁ ଦବିବା ପାତ୍ର ନୁହେଁ । ସେ ବଡ଼ ସାହେବଙ୍କୁ
ମୁହେଁ ମୁହେଁ ଜବାବ ଦେଲା—"ଆଜି ସହିପାରିବୁ ନାହିଁ
ସାହେବ ! ବହୁତ ସହିଛୁ ! ଆମର ରକ୍ତ ନିଗାଡ଼ି ଦେଇ ଯେଉଁ
କଳଘରକୁ ଆମେ ଠିଆ କରାଇଛୁ, ତାକୁ ଭାଙ୍ଗିବାକୁ ଆମେହିଁ

ଏକ୍ସମାନ ଅଧିକାରୀ । ତମେ ଯେଉଁ କଳଘରଟାକୁ ବଞ୍ଚାଇବାକୁ ଯାଇ ଆମକୁ ନରକର ଅତଳ ଗହ୍ବରକୁ ପେଲି ଦେଉଛ—ଦିନେ ତମର ସେଇ କଳଘରର ମୂଳଦୁଆଟା ବି ଆମର ସମ୍ମିଳିତ ନିଃଶ୍ବାସରେ ଖସି ପଡ଼ିବ !”

ବଡ଼ସାହେବ ହରିର ଏ ଧୃଷ୍ଟତା ଦେଖି ଲାଲ ଆଖି ଦେଖାଇ ଗର୍ଜି ଉଠିଲେ,—“ଡଗୋ ହଉ, ଅବବ ଛମପୁ ହାପୁ । ଟୁମ୍ ଭୂଲ୍ ଛମଜ୍ କଉ ବଲେ—କ୍ୟା କହେଗା !”

ହରି ପୂର୍ବପରି ଅବିଚଳିତ ସ୍ବରରେ ସଦର୍ପରେ ଉତ୍ତର ଦେଲା, “ମୋତେ ଆଉ ଭୟ ଦେଖାଇବାକୁ ହେବ ନାହିଁ ସାହାବ ! ମୋର ସଂକଳ୍ପଟାକୁ ବଞ୍ଚାଇ ରଖିବାକୁ ଏ ବ୍ୟର୍ଥ ପ୍ରାଣଟାକୁ ଫାସୀ କାଠରେ ଟାଙ୍ଗିଦେବାକୁ ମଧ୍ୟ ପଛାଇବି ନାହିଁ !”

ହରିର ଏହି ସଦମ୍ଭ ଜବାବ ସାହେବ ପକ୍ଷରେ ବଡ଼ ଅସହ୍ୟ ହୋଇ ଉଠିଲା । ମୁହୂର୍ତ୍ତିକରେ ତାଙ୍କର ଅଙ୍ଗୁଳି ସଙ୍କେତରେ ଅପର ଏକ କୋଠରୀରୁ ଆସି ପୋଲିସ ବାହାର ହରିକୁ ଗିରଫ କରିନେଲେ । ଆଉ ଗୀତ ଗୀତ ଭିତରେ ଏକ ସ୍ବତନ୍ତ୍ର ମଟର ଯୋଗେ ହରି ଏକ ଅଜ୍ଞାନ ସ୍ଥାନକୁ ଚାଲାଣ ହୋଇଗଲା । ସାହେବ ତାଙ୍କର କଳ୍ପିତ ଚକ୍ରାନ୍ତରେ ଏତେ ସହଜରେ ସଫଳତା ପାଇବା ଦେଖି ଅଟ୍ଟହାସ କରି ହସିଉଠିଲେ । ଏଣେ ଏକ ଅଜ୍ଞାତ ଆଶଙ୍କା କଳ୍ପନା କରି ଶାନ୍ତିରକ୍ଷା ନିମନ୍ତେ ରିଜର୍ଭ ପୋଲିସ ପ୍ରାର୍ଥନା କରି ହାଜାରିବାଗ ତାର କରିବାକୁ ମେନେଜରଙ୍କୁ ହୁକୁମ ଦେଲେ ।

ଏଣେ ଶ୍ରମିକସଂଘ ଘରେ ହରିଙ୍କୁ ଅପେକ୍ଷା କରି କରି ଶ୍ରମିକ-ମାନଙ୍କର ଆଖିରୁ ପାଣି ମଲା । ରାତି କ୍ରମଶଃ ଗଭୀରରୁ ଗଭୀରତର ହୋଇଆସିଲା, ତେବେ ମଧ୍ୟ ହରି ଫେରିଆସିଲା ନାହିଁ । ଶ୍ରମିକ-ଦଳଙ୍କ ମନରେ ସନ୍ଦେହ ଗାଢ ହେଲା । ରାମଦୀନ, ଶଙ୍କର, ବେନିପ୍ରସାଦ ପ୍ରଭୃତି କେତେକ ସାହାସର ସହିତ ସାହାବ ବଙ୍ଗଳା ପାଖରୁ ବୁଲିଆସି ସନ୍ଧାନ ଦେଲେ ଯେ—'ସବୁ ସୂନଶାନ୍, ଅନ୍ଧାର, ସଭିଏଁ ନିଦରେ ଶୋଇଛନ୍ତି । ଜନମାନବର ଦେଖା ନାହିଁ, କେବଳ ବଙ୍ଗଳା ବାରନ୍ଦାରେ ଦି'ଜଣ ଗୁର୍ଖା ସିପାହି ବନ୍ଧୁକ କାନ୍ଧରେ ପହରା ଦେଉଛନ୍ତି ।'

ଏହି ଅପ୍ରତ୍ୟାଶିତ ସମ୍ବାଦରେ ଉପସ୍ଥିତ ଜନତା ମଧ୍ୟରେ ଗୃଞ୍ଚଳ୍ୟ ଦେଖାଗଲା । ରାତି ରାତି ସବୁ ଶ୍ରମିକ ମହଲରେ ବେତାର-ବାର୍ତ୍ତା ଖେଳିଲା ପରି ସମ୍ବାଦ ଖେଳିଗଲା ଯେ, ସାହାବ ହରିଙ୍କୁ ଆପୋଷ ନିଷ୍ପତ୍ତି କରିବା ଛଳନାରେ ଡାକିନେଇ ମାରି ଦେଇଛନ୍ତି—ଲାସ୍ର ଦେଖା ମିଳୁନାହିଁ । ଯେ ଶୁଣିଲା ଟୋଲା ମାରିଲାପରି ଦଣ୍ଡେ ଛିଡ଼ା ହୋଇଗଲା ।

ପରଦିନ ସୂର୍ଯ୍ୟ ଉଦୟ ସଙ୍ଗେ ସଙ୍ଗେ ଅଗଣିତ ଶ୍ରମିକରଧାଡ଼ି ପିମ୍ପୁଡ଼ି ସୁଅପରି ସାହାବବଙ୍ଗଳା ଆଡ଼କୁ ଅଗ୍ରସର ହେଲେ । ସେ ଦିନ ସେ ଜନତାର ଅଗ୍ରଣୀ ନିଜେ ଧରମୁ । ସାହାବ ବାରନ୍ଦାରେ ଥାଇ ଏସବୁ ଦେଖି ପ୍ରମାଦ ଗଣିଲେ । ଗୁର୍ଖାସିପାହି ଦିହେଁ ଫାଟକରେ କଣ୍ଟି ପକାଇ ବନ୍ଧୁକ କାନ୍ଧରେ ଧରି ବଙ୍ଗଳା ଚାରିପାଖ ଟହଲ ମାରୁଥାନ୍ତି । ଜନତା ଫାଟକ ନିକଟରେ ପହଞ୍ଚି ଚିତ୍କାର କଲା- "ପୁଞ୍ଜିବାଦ ଧ୍ୱଂସ ପାଉ,—ଇନ୍‌କଲାବ୍—ଜିନ୍ଦାବାଦ୍ !" ସାହାବ

ପିସ୍ତଲ ଉଠାଇ ଫାଟକ ପାଖକୁ ଚାଲିଆସି ଗର୍ଜ୍ଜନ କରି କହିଲେ—"ଏସ୍ ସିପାହି ! ଇନ୍ ଛୟୁଟାନ୍ ଲୋଗୋକୋ ଭଗାଦୋ ।"

ସାହେବଙ୍କର ଏହି ବ୍ୟବହାରରେ ଉପସ୍ଥିତ ଜନତା ଉତ୍ୟକ୍ତ ହୋଇ ଉଠିଲେ । ଧରମୁ ସେମାନଙ୍କୁ ଶାନ୍ତ କରିବାକୁ ଯାଇ ହାତ ଉଠାଇ ଉଚ୍ଚସ୍ୱରରେ କହି ଉଠିଲା—"ଧୈର୍ଯ୍ୟଧର ଭାଇମାନେ, ଧୈର୍ଯ୍ୟ ଧର ! ଏପରି ଗରମ ହେଲେ କାମ ଚଳିବ ନାହିଁ । ଆମକୁ ଶାନ୍ତ-ସଂଗ୍ରାମ କରିବାକୁ ପଡ଼ିବ । ଆମର ପଶୁବଳ ସହିତ ଯାନ୍ତ୍ରିକ ସଂଗ୍ରାମ କରିବାର ଶକ୍ତି ନାହିଁ । ସେ ଆହୁରି ଉଚ୍ଛ୍ୱସିତ ହୋଇ ଦ୍ୱିଗୁଣ ତେଜରେ କହିଉଠିଲା—"ଦେଖୁଛ ଭାଇ, ଏଇ ଯେଉଁ ଶୀର୍ଣ୍ଣ ଧମନୀ ମୋର ଏଇ ଶୁଖିଲା ଚମଡ଼ାତଳେ ବାହାରିହୋଇ ପଡ଼ୁଛି, ଏବେ ସୁଦ୍ଧା ଏଇଥିରେ ଉତ୍କଳର ବୀର ଖଣ୍ଡାୟତ ବଂଶର ରକ୍ତ-ପ୍ରବାହ ବୋହୁଛି । ଏଇ ଯେଉଁ ଦୁର୍ବଳ କୋହଳ ବାହୁ ଦି'ଟା ଦେଖୁଛ—ଏହାରି ବଳରେ ଦି'ଦି'ଟା ଅଧମହଣିଆ ଖଣ୍ଡା ଫର ଫର ହୋଇ ଘୂରିବୁଲୁଥିଲା । ଆଜି ଆଜି, ଆଜି ତାହା ଏହି ଶୋଷକ ଶାସକ-ଗଣଙ୍କର ନିବିଡ଼ ଶୋଷଣ ଫଳରେ ରକ୍ତହୀନ, ତେଜୋହୀନ ହୋଇପଡ଼ିଛି । ତା'ନ ହେଲେ ଆଜି ସାହାବର ସାଧ ଥାଆନ୍ତା, ହରିଭାଇକୁ ନେଇ କେଉଁଠି ଲୁଚାଇ ରଖିବାକୁ ? ପ୍ରତିଜ୍ଞା କର ଭାଇ, ଏଇଠି ଏମିତି ବସିରହିବା ପଛକେ—ହରିଭାଇକୁ ସାଙ୍ଗରେ ନ ନେଇ ଯିବାନାହିଁ ।" ଜନତା ମଧ୍ୟରୁ ସମସ୍ୱରରେ ପ୍ରତିଧ୍ୱନି ଉଠିଲା—"ନିଶ୍ଚୟ, ନିଶ୍ଚୟ !—ସାହାବ ଆମ ହରିଭାଇକୁ ଭଲରେ ଭଲରେ ଫେରାଇ ଦିଅ ।" ଶାନ୍ତିପୂର୍ଣ୍ଣ ଜନତା ସମସ୍ୱରରେ [illegible] ଚିତ୍କାର କରିଉଠିଲା ।

ସାହାବ ଏ ବ୍ୟାପାର ଦେଖି ସଙ୍ଗେ ସଙ୍ଗେ ସ୍ଥାନୀୟ ପୋଲିସ୍ ଫଉଜଙ୍କୁ ଫୋନ୍ କରି ନିଜର ବିପଦ ସମ୍ଭାବନା ଜଣାଇ ଦେଲେ । ତା'ର କିଛିକ୍ଷଣ ପରେ ପୋଲିସ ଆସି ଧରମୁକୁ ଗିରଫ କରିବାକୁ ଅଗ୍ରସର ହେଲେ । ହଠାତ୍ ଜନତା ମଧ୍ୟରେ ଶୃଙ୍ଖଳତା ଦେଖାଗଲା । ସଙ୍ଗେ ସଙ୍ଗେ ଅସଂଖ୍ୟ ଶ୍ରମିକ ଧରମୁକୁ ମଝିରେ ରଖି ତା' ଚାରିପାଖ ଘେରିଗଲେ, ଆଉ ଚିତ୍କାର କରି ଉଠିଲେ—"ଫେରିଯାଅ—ଫେରିଯାଅ ଦସ୍ୟୁ, ଧରମୁକୁ ଆମେ କେବେହେଲେ ଛାଡ଼ିବୁ ନାହିଁ ।"

ଠିକ ଏତିକିବେଳେ ଧୂଳି ଉଡ଼ାଇ ଶହେ ଜଣ ସଙ୍ଗୀନ୍ଧାରୀ ଗୁର୍ଖା ସିପାହୀ ଧରି ହଜାରିବାଗରୁ ଦଉଡ଼ି ଲରି ଆସି ପହଞ୍ଚିଗଲା । ଆଖି ପିଛୁଳା ମାତ୍ରକେ ଅବସ୍ଥା ଭିନ୍ନ ରୂପ ଧାରଣ କଲା । ଜନତାକୁ ହଟିଯିବାପାଇଁ ଆଦେଶ ଦିଆଗଲା—କିନ୍ତୁ ଜନତା ସେ ଆଦେଶ ଗ୍ରାହ୍ୟ କଲେନାହିଁ, ଛିଡ଼ାହୋଇ ରହିଲେ ଅଟଳ ଅଚଳ ହୋଇ । ପୁଣି ଥରେ ସାବଧାନ ସଙ୍କେତ ଦିଆଗଲା; ମାତ୍ର ଉତ୍କ୍ଷିପ୍ତ ଜନତା ସେ ଭୟ ପ୍ରଦର୍ଶନକୁ ଭ୍ରୂକ୍ଷେପ ନ କରି ପୂର୍ବଠାରୁ ଦ୍ୱିଗୁଣ ଦମ୍ଭରେ ଅବିଚଳିତଭାବରେ ଛିଡ଼ାହୋଇ ରହିଲେ । ସଙ୍ଗେ ସଙ୍ଗେ ଚାଲିଲା ଲାଠି । ଲାଠି ଓ ବନ୍ଧୁକ କୁନ୍ଦା ମାଡ଼ରେ ନିରୀହ ଅଶିକ୍ଷିତ ମୂକଜନତା ଅସ୍ତ୍ରବ୍ୟସ୍ତ ଓ ବିକ୍ଷିପ୍ତ ହୋଇଗଲେ । ଯେତେବେଳେ ପୋଲିସ ଫଉଜ ତାଙ୍କର ପଶୁବଳର ବୀରତ୍ୱ ଦେଖାଇ ସାରି ଦମ୍ ନେଲେ ସେତେବେଳକୁ ଧରମୁ ପ୍ରମୁଖ ସାତଜଣ ଶ୍ରମିକ ବନ୍ଦୀ । ଆଜି ରାମଦୀନ, ପ୍ରତାପସିଂହ, ଶଙ୍କରା ମଧୁଆ ପ୍ରଭୃତି ଅଭିଶପ୍ତ ପ୍ରାଣୀ ଚକ୍ରାନ୍ତ କୋଳବଳରେ ମାଡ଼ି ବାମୁଡ଼ି ପଡ଼ିଛନ୍ତି ।

ସାହେବ ବାରଣ୍ଡାରେ ଥାଇ ହାଃ ହାଃ କରି ହସିଉଠି
କହିଲେ—"କ୍ୟା ହୁଆ ଭରମୁ, ଦେଖା । ହାଃ-ହାଃ-ହାଃ "

ସେହି ଦିନ ଶୁକ୍ରବାରବେଳର କଥା । ଟ୍ରେନ୍ ଟାଇମ୍ ହୋଇ-
ଯାଇଥାଏ । ଷ୍ଟେସନର ଅଦୂରରେ ଲୋକାରଣ୍ୟ । ପ୍ଲାଟଫର୍ମର
ଦୁଇପାଖ ସଙ୍ଗୀନ୍‌ଧାରୀ ଗୁର୍ଖା ସିପାହୀଗଣ ପହରା ଦେଉଥାଆନ୍ତି ।
ଗୋଟାଏ ତୃତୀୟ ଶ୍ରେଣୀ ଡବାରେ ଧରମୁ ଓ ତା'ର ସଙ୍ଗୀ ଛ ଜଣ
ଭର୍ତ୍ତି ହୋଇଛନ୍ତି—ହାତରେ ତାଙ୍କର ହାତକଡ଼ି ଗୋଡ଼ରେ ବେଡ଼ି ।
ଡବା ଭିତରେ ମଧ୍ୟ ପୋଲିସ ପହରା । ରତ୍ନମୀ ଧୀରେ ଧୀରେ
ଯାଇଁ ପ୍ଲାଟଫର୍ମ ପାଖ ନିମ୍ବଗଛ ତଳେ ଠିଆହେଲା ମିଳିବନରେ,—
ତା'ର ପ୍ରାଣରେ ଯେ ଆଜି ପ୍ରବଳ ଝଡ଼ ତୋଫାନ ବୋହିଚାଲିଛି ।
ସ୍ୱାମୀ ତା'ର ରାଜଦ୍ରୋହୀ ବନ୍ଦୀ ବେଶରେ । ସେ ଗୌରବମୟ
ଯାତ୍ରୀର ଲଲାଟରେ ଜୟଟିକା ପିନ୍ଧାଇଦେବା ପାଇଁ କେହି ଆସିନଲେ
ନାହିଁ କି ଫୁଲହାର ଧରି ତା ନିକଟରେ ଛିଡ଼ାହେବାପାଇଁ କେହି
ରହିଲେ ନାହିଁ । କେବଳ ରତ୍ନମୀ ଆସିଛି ଏକ ଦୁଃଖର ଅଶ୍ରୁସାଗର
ସଙ୍ଗରେ ନେଇ ! ସ୍ୱାମୀ ତା'ର ତା ଆଡ଼କୁ ଚାହିଁଲା ମାତ୍ରକେ
ସେ ସାଗର ତା'ର ଉଦ୍ଦାମ ଚଞ୍ଚଳ ହୋଇଉଠିଲା । ଧରମୁ
ତାକୁ ଇଙ୍ଗିତରେ କାନ୍ଦିବାକୁ ବାରଣ କରି ତା' ଆଡ଼କୁ
ଚାହିଁରହିଲା ।

ଆଜି ଧରମୁ ତାର ଜୀବନର ବୃନ୍ଦାବନ ଏହି ଶ୍ୟାମଳ
ଭୂଇଁକୁ ଶେଷ କରିଦେଇ ଯାଉଛି—କେତେଦିନ ପାଇଁ ସେ
ଜାଣେ ନାହିଁ । ରତ୍ନମୀକୁ ତା'ର ଅନେକ କଥା କହିବାର ଥିଲା—
ରତ୍ନମୀର ମଧ୍ୟ କହିବାର ଅନେକ ଥିଲା । କିନ୍ତୁ କେହି କାହାକୁ
କିଛି କହି ପାରିଲେ ନାହିଁ ଆଜି । ତାଙ୍କ ଭିତରେ ଆଜି ଯେ ଏକ

ଅନନ୍ତ ବ୍ୟବଧାନ । ଧରମୁ ଏତେଦିନକେ ଆଜି ରତ୍ନମଣିକୁ ନିକଏ ଲକ୍ଷ୍ୟ କରି ଦେଖିବାର ସୁଯୋଗ ପାଇଛି । ଏଥିମଧ୍ୟରେ ରତ୍ନମଣିର ରୂପର କି ଘୋର ପରିବର୍ତ୍ତନ ଘଟିଛି । ଆଜି ସେ ପାଞ୍ଚବର୍ଷ ଆଗର ବହ୍ନିରୂପିଣୀ ସୁନ୍ଦରୀ ରତ୍ନମଣି ନୁହେ । 'ହୃଷ୍ଟପୁଷ୍ଟ ଅଙ୍ଗପ୍ରତ୍ୟଙ୍ଗରେ ତାର ଶିଥିଳତା ଦେଖାଦେଇଛି । ଗାଲ ଓ ଆଖି ଦିଓଟି ଭିତରକୁ ପଶିଯାଇଛି । ପଞ୍ଜରା ଓ ବେକର ହାଡ଼ ଉପରକୁ ବାରିହୋଇ ଦେଖାଯାଉଛି । ରତ୍ନମଣିର ସେ ଶୀର୍ଣ୍ଣମୂର୍ତ୍ତି ଆଡ଼କୁ ଧରମୁ ଆଉ ଚାହିଁ ପାରିଲା ନାହିଁ । ନିଜପ୍ରତି ତା'ର ଏକ ବିରାଟ ଅସମ୍ମାନ ଆସିଗଲା—'ସେ ଯେ ଏକ ଅକର୍ମଣ୍ୟ ପିଶାଚ । ତା'ର ନିଃଶ୍ୱାସରେ ଅମ୍ଳାନ କୁସୁମ ରତ୍ନମଣି ମଧ୍ୟ ଅକାଳରେ ଝାଉଁଳି ପଡ଼ିଲା । କି ଅଧିକାର ତା'ର ଥିଲା ରତ୍ନମଣିର ପ୍ରାଣଟାକୁ ନେଇ ଏପରିଭାବରେ ଖେଳିବାକୁ ? କେତେ ଦିନ ହେଲା ପେଟପୂରା ମୁଠାଏ ଭାତ ମଧ୍ୟ ତାକୁ ଯୋଗାଇ ପାରିନାହିଁ । ସେହି ଧୈର୍ଯ୍ୟ-ଶୀଳା ଦେବୀପ୍ରତିମା ରତ୍ନମଣିର ଅଧର ଫାଙ୍କରେ ଦିନେ ହେଲେ ତ ସେ ଏକ ହସର ରେଖା ଫୁଟାଇ ପାରିନାହିଁ ! କି ଅତ୍ୟାଚାର ! ଆଉ ରତ୍ନମଣି, ଦୟାମୟୀ ରତ୍ନମଣି ତା'ର ସଂସାରକୁ ଆସି କେବଳ ନୀଳକଣ୍ଠ ପରି ବିଷପାତ୍ର ଧରି ଚୁମ୍ବନ ଦେଇଛି । ଏଥିପାଇଁ ଦାୟୀ କିଏ ? ଧରମୁ, ସେ ନିଜେ !' ଆଉ ସେ ଭାବିପାରିଲା ନାହିଁ, କେବଳ ନୀରବରେ ରତ୍ନମଣି ଆଡ଼କୁ ଚାହିଁ ପ୍ରାଣର ନିବେଦନ ତା'ର ଜଣାଇଗଲା, ଆଖିର କରୁଣ ଚାହାଣୀରେ । ରତ୍ନମଣି ମର୍ମେ ମର୍ମେ ସେ ଅବ୍ୟକ୍ତ ଭାଷା ବୁଝିପାରିଲା, ପ୍ରାଣଟା ତା'ର ହାହାକାର କରି କାନ୍ଦିଉଠିଲା । ଧରମୁ ଟିକିଏ ହସିଦେଇ ଦୁଃଖଟା ଗୋପନ କରିବାକୁ ଯାଇ ଧରା ପଡ଼ିଗଲା ତା'ର ରତ୍ନମଣି ପାଖରେ ।

ହଠାତ ଗାର୍ଡ଼ ସାହେବଙ୍କର ସିଟି ବାଜିଉଠିଲା । ନିର୍ଦ୍ଦୟ ଇଞ୍ଜିନ୍‌ଟା ଏକ ବିରାଟ ଚିତ୍କାର କରି ଧକ୍‌ଧକ୍ ହୋଇ ଆଗକୁ ଧାଇଁ ଚାଲିଲା—ବିଦ୍ରୋହୀ ବନ୍ଦୀଗଣଙ୍କୁ ତାଙ୍କର ପ୍ରିୟଜନମାନଙ୍କ ଦୃଷ୍ଟିରୁ ଅନ୍ତର କରି । ରତନୀ 'ହାୟ ହାୟ' କରି ସେହି ନିମ୍ବଗଛ ମୂଳେ ହତଜ୍ଞାନ ହୋଇ ଖସିପଡ଼ିଲା । ଜନତା ଆଖିରେ ଅଶ୍ରୁ ଧରି ନିଜ ନିଜ ଘରକୁ ଫେରିଗଲା ।

ଧରମୁ ରେଲ ଡ଼ବା ଭିତରେ ବସି ଝରକା ଦେଇ ବାହାରକୁ ଚାହିଁ ସେହି ଗୃହାଭିମୁଖୀ ନିରାହ ଅଶିକ୍ଷିତ ମୂକ ଜନତା ଆଡ଼କୁ ଚାହିଁରହିଥିଲା । ଇଞ୍ଜିନଟା ଧାଇଁ ଧାଇଁ ଆସି କାଲ ନଦୀର ପୋଲ ଉପରେ ପଡ଼ି ଦ୍ୱିଗୁଣ ଶବ୍ଦ କରିଉଠିଲା । ହଠାତ୍ ଧରମୁର ଦୃଷ୍ଟି ଯାଇ ପଡ଼ିଲା ସେଇ ପଳାଶ ଗଛଟା ଉପରେ—ଯାହାର ମୂଳରେ ସେ ତାର ରକ୍ତ ମାଂସର ପ୍ରତନିଧିକୁ କେଇ ହାତ ମାଟି ତଳେ ସାଇତି ରଖିଛି ! ସେଇ ଗଛର ନାଲି ନାଲି କେଇଟା ସୁନ୍ଦର ଫୁଲଆଡ଼କୁ ଚାହିଁ ଆଖିରୁ ତା'ର ଝରଝର ହୋଇ ଲୁହ ଖସି-ପଡ଼ିଲା । କ୍ରମେ କ୍ରମେ ତା'ର ପରିଚିତ ସ୍ଥାନ ସବୁ ଗୋଟି ଗୋଟି ହୋଇ ତା'ର ଆଖି ଆଗରୁ ଲୁଚିଗଲା । ଏଣିକି ଗୋଟିଏ ଗୋଟିଏ ହୋଇ ତାର ଅତୀତ ଜୀବନର ଘଟଣାବଳୀ ତା' ସମ୍ମୁଖରେ ନାଚି ଉଠିଲା ! ଖୋର୍ଦ୍ଧାର ସେଇ ପଲ୍ଲୀ ଗାଁ—ତରାବୋଇ । ଗ୍ଲେଟ କୁଡ଼ିଆ ଖଣ୍ଡିକରେ ଶୈଶବ ତା'ର କଟାଇଥିଲା—ବାପମା'ଙ୍କୁ ହରାଇ ଏକୁଟିଆ ହୋଇ । ପିଲାଦିନେ ତରାବୋଇରେ ସେଇ ଫଗୁ ଖେଳ ଅଜ ଦଶ ମେଳନ ଏବେ ସୁଦ୍ଧା ତା'ର ସ୍ପଷ୍ଟ ମନେ ଅଛି । ଯେମିତି ଟିକିଏ ବଡ଼ ହେଲା, ସତ୍ୟବାଦୀ ମଉସା ଘରକୁ ତା'ର ଚାଲି ଆସିଲା । ସେଇଠି ସତ୍ୟବାଦୀର ବକୁଳବନ

ଆଶ୍ରମରେ ରହି କିଛିଏ ଶିକ୍ଷାଦୀକ୍ଷା ଲାଭ କରିଥିଲା । ମଉସା ତାର ପାଖଗାଁ ଗଡକୁଣ୍ଡର ଏକ ଦରିଦ୍ର ଖଣ୍ଡାୟତ ବଂଶର ଜଣେଶ୍ରୀ କନ୍ୟା ସହିତ ତାକୁ ହାତକୁ ଦୋହାତ କରି ଦେଇଥିଲେ । ତାପରେ ଉତ୍କଳମଣି ଗୋପବନ୍ଧୁଙ୍କ ସଙ୍ଗ ସେ ଆସିଲା ସିଂହଭୂମି ସମ୍ମିଳନୀ ପ୍ରେସକୁ ଦପ୍ତରୀ ହୋଇ । କିନ୍ତୁ ନିଯୁକ୍ତ ଦେ ତାକୁ 'କୁଲି' କରି ପୃଥିବୀକୁ ପଠାଇଥିଲା ! ଗୋପବନ୍ଧୁ ଗଲେ । ସମ୍ମିଳନୀ ପ୍ରେସ ଗଲା । ଶେଷରେ ସେ ବୁଲିବୁଲି ଗୁଆ ଲଦା ଖଣିରେ କାମପାଇ ହେଲା କୁଲି !

କୁଲିଗିରି କରିବାକୁ ତା'ର ମୂଳରୁ ଆପତ୍ତି ନ ଥିଲା ବା କୁଲିଗିରିକୁ ସେ ଆଦୌ ଅସମ୍ମାନ କରୁ ନ ଥିଲା । କେବଳ ଅବିଚାର ଅତ୍ୟାଚାର ଉପରେ ଯେଉଁ ପ୍ରତିଷ୍ଠାନର ମୂଳନୁଆ ଦିଆ, ସେଇଠାକୁ ସେ କେବେହେଲେ ଭଲ ଦୃଷ୍ଟିରେ ଦେଖିପାରି ନାହିଁ । ତେଣୁ ସେ ତା'ଙ୍କ କର୍ତ୍ତୃପକ୍ଷକୁ କେବେହେଲେ ସନ୍ତୁଷ୍ଟ କରି-ପାରି ନାହିଁ । ମେନେଜରମାନେ ଯେତେବେଳେ କୋଠି ଜେଣ୍ଟଲମ୍ୟାନ୍ ପିନ୍ଧି ମଟରରେ ବସି ଧୂଳି ଉଡ଼ାଇ ପହଞ୍ଚି ଯାଆନ୍ତି, ଗଣ୍ଡାଗଣ୍ଡା ସିଗାରେଟ, ନିଆଁ ଲଗାଇ ପାଉଁଶ କରି ଦିଅନ୍ତି,—ଧରମୁ ଯେତେବେଳେ ଭାବେ, କେଉଁ ଅଧିକାର ନେଇ ଏ ମେନେଜର ତାଙ୍କ ଉପରେ ଆଧିପତ୍ୟ ଓ ଅତ୍ୟାଚାର କରିବସନ୍ତି । ଖାଦାନ ଆଉ କଳଘର ତ ଚାଲିଛି କେବଳ ତାଙ୍କର ପରିଶ୍ରମ ଉପରେ ନିର୍ଭର କରି । ତା'ହେଲେ ଏଇ ମେନେଜର ବା ତାଙ୍କର ମାଲିକ, ଆଉ ଏହି ଶ୍ରମିକ କୁଲି—ଯୁଆଙ୍କ ମଧ୍ୟରେ ମଣିଷ ହିସାବରେ ଅଧିକାର ସମାନ ହୁଏ ନାହିଁ କାହିଁକି ? [illegible] ଶତାବ୍ଦି ତାକୁ ଆଜି ଏ ବେଶରେ ସଜାଇ ଦେଇଛି ।

ସେ ଆଜ ( 'ବୀ ବନ୍ଦୀ । ତାର ଯୌବନର ସ୍ୱପ୍ନଟା ତଳବନ୍ଧା
ବ୍ୟର୍ଥପ୍ରେମ ଭିତରେ ଲିଭିଯାଇ ନାହିଁ । ତା ଭିତରେ ଅନେକ
କଳ୍ପନା ଭରି ରହିଥିଲା । ଏଣେ ରତମୀ,—ତା ପାଇଁ ନିଜ
ନିଜକୁ ରିକ୍ତ କରି ଦାଣ୍ଡରେ ଆସି କାଙ୍ଗାଳିନୀ ବେଶରେ ଛିଡା-
ହେଲା —ତାକୁ ବି ସେ ପ୍ରାଣ ଦେଇ ଭଲ ପାଇଛି !—ଶ୍ରଦ୍ଧା
କରିଛି । ଆଜି ବିଦାୟ ଦିନରେ ସେ ସେହି ଅଚ୍ଛେଦ୍ୟ ପ୍ରେମର
ସ୍ମୃତିଟାକୁ କୌଣସି ପ୍ରକାରେ ପାଶୋରି ପାରୁ ନାହିଁ । ଦୀର୍ଘ-
ନିଃଶ୍ୱାସଟାଏ ପକାଇ ସେ ତାର ବନ୍ଦୀ ବନ୍ଧୁମାନଙ୍କ ଆଡ଼କୁ ଲୁହ
ଟିକିଏ ହସିଦିଏ, ମାତ୍ର ହସଟା ତା'ର ବିକୃତ ହୋଇ ପଦାକୁ
ବାହାରି ପଡ଼େ ।

ରତମୀର ଯେତେବେଳେ ଚେତନା ଆସେ—ସେ ଦେଖେ -
ସେ ତାର ଭଙ୍ଗା କୁଡ଼ିଆଟିରେ ଶୋଇଛି, ତା' ମୁଣ୍ଡ ପାଖରୁ
ହରିବୋଉ ବସି ପଙ୍ଖା କରୁଛି । ଗୋଟି ଗୋଟି ହୋଇ ଦିନଟା-
ଯାକର ସବୁକଥା ତା'ର ମନେ ପଡ଼ିଯାଏ । ସେତେବେଳେ
ସମ୍ମୁଖର ସେହି ଠିକାଦାର ବଙ୍ଗଳା ଆଡୁ ସଙ୍ଗୀତର ତାନ
ଭାସିଆସେ—ତା'ର ଭଙ୍ଗାକୁଡ଼ିଆ ଆଡକୁ । ସେ ମନେ ମନେ
କହିଉଠେ—'ଓଃ କି ପାଷାଣ, କି ନିର୍ଦ୍ଦୟ ! ଆଜି ଦିନକପାଇଁ
ହେଲେ ନୀତାନ ଏ ଆନନ୍ଦର ଗୀତସୁର ପରିବର୍ତ୍ତେ ଗୋଟିଏ
କରୁଣ ରାଗିଣୀ ବଜାଇ ଦେ ଭଲା !' ହଠାତ୍ ସେହି ବଙ୍ଗଳା
ଭିତରୁ ଖୋକାର ଦୋଉଟିଭାଷାର ମଧୁରସୁର ଭାସିଆସେ—
'ମା' 'ମା' । —ରତମୀ ଛାତିଟାକୁ ଖୁବ୍ ଜୋରରେ ଚିପିଧରି
କାନ୍ଦିଉଠେ— 'ମୋ ନିଧିରେ—ମୋ ସଙ୍ଖାଳରେ !' ହରିବୋଉ

ତାଙ୍କୁ ସାନ୍ତ୍ୱନା ଦେବାକୁ ବ୍ୟର୍ଥ ଚେଷ୍ଟା କରି ନିଜେ କାନ୍ଦି ପକାଏ ।

କିଛିକ୍ଷଣ ପରେ ରତନୀ ନିଜକୁ ସମ୍ଭାଳି ନେଇ ଥିରହୋଇ ହରବୋଲକୁ ଦଣ୍ଡେ ଚାହିଁରହି କଣ ଭାବିଲା—ପୁଣି ଆଖିବୁଜି ଛିଣ୍ଡା ପଟିଆ ଖଣ୍ଡିକରେ ଗଡ଼ିପଡ଼ିଲା । ହରବୋଲ ତାକୁ ବୃଥା ସାନ୍ତ୍ୱନା ଦେବାକୁ ଯାଇ କ୍ରମେ ନିଜେ ଅଧୀର ହୋଇପଡ଼ିଲା—। ତା'ର ପାଳିଲା ପୁଅ ଯେ ଆଜିକୁ ଦଶ ଦିନ ହେଲା ଅଦୃଶ୍ୟ ହୋଇ-ଯାଇଛି । କିଛିକ୍ଷଣ ପରେ ସେ ଆଖିପୋଛି ଉଠି ଛିଡ଼ାହେଲା । ଆଉ ରତନୀର କଂସାଖଣ୍ଡିକ ନେଇ ତା ଘରୁ ଭାତ ଦିଟା ଆଣିବାକୁ ଚାଲିଗଲା । ହରବୋଲ ଯେମିତି କଂସାଟି ନେଇ ତା କୁଡ଼ିଆ ଆଡ଼କୁ ଚାଲିଯାଇଛି—ରତନୀ ଧୀରେ ଧୀରେ ଘରୁ ପାଦ କାଢ଼ି ସେଇ ମେଘ ଅନ୍ଧାର ଭିତରେ ଲୁଚିମାଇ ଧାଇଁଗଲା—କାଳିନଦୀର କୂଳଆଡ଼କୁ !

ସେତେବେଳେ ଚତୁର୍ଦ୍ଦିଗ ଗାଢ଼ ଅନ୍ଧକାରଚ୍ଛନ୍ନ । ଗଭୀର-ରାତି । କିଛିକ୍ଷଣ ପୂର୍ବରୁ ହତଭାଗ୍ୟଗଣଙ୍କର ଶୋକଦୁଃଖରେ ସହାନୁଭୂତି ଦେଖାଇବାକୁ ଯାଇ ପ୍ରକୃତିଦେବୀ ଝଡ଼ବର୍ଷା ରୂପରେ ବୋହି ଯାଇଥାଆନ୍ତି । କାଳିନଦୀର ଗୋଳିଆପାଣି ଫୁଲି ଫୁଲି ଉଠି ଧାଇଁ ଯାଉଥାଏ । ରତନୀ ନୀରବରେ ଯାଇ ଛିଡ଼ାହେଲା ତା'ରି କୂଳରେ । ସମ୍ମୁଖରେ ରେଲପୋଲ ତଳେ ବୀର ସହିଦ୍‌ମାନଙ୍କର ଚିତାନଳ ହୁତୁ ହୁତୁ ହୋଇ ଜଳି ଉଠୁଥିଲା—ଯେଉଁଠି ତା'ର ଦେଢ଼ବର୍ଷର ଆଦରର ଧନ ପ୍ରଥମ ସହିଦ୍ ଧରଣୀ କୋଳରେ ଚିରଦିନ ପାଇଁ ଶାନ୍ତିରେ ଶୋଇଛି ! ପାଦତଳ ତା'ର ସମସ୍ତ

ପୃଥିବୀଟା ଉପର ଟିକଏ ଟିକଏ ହୋଇ ତଳକୁ ଦବିଗଲା ।
ସେ ଆଉ ଠିଆ ହୋଇପାରିଲା ନାହିଁ—ସେଇଠି ଖସିପଡ଼ିଲା ।

ପରଦିନ ସକାଳୁ ହରବୋଉଠାରୁ ଖବର ପାଇ କେତେଜଣ ରତମୀକୁ ଖୋଜି ଖୋଜି ଆସି କାଳନଦୀକୂଳରେ ଦେଖନ୍ତି—ଝାମ୍ପୁରା ବରଗଛ ଡାଳରେ ପିନ୍ଧିଲା ଶାଢ଼ୀଟି ବେକରେ ବାନ୍ଧି ଝୁଲୁଛି—'ରତମୀ' !